# କବିଚନ୍ଦ୍ର ପରିକ୍ରମା

( ସ୍ମରଣୀକା-୧୯୭୮ । କବିଚନ୍ଦ୍ର ବିଶେଷାଙ୍କ )


ପରିକ୍ରମା ପ୍ରକାଶ କମିଟି

● ମୁଖ୍ୟ ଉପଦେଷ୍ଟା

ଶ୍ରୀ ସତ୍ୟପ୍ରିୟ ମହାନ୍ତି

● ଉପଦେଷ୍ଟା

ଶ୍ରୀ ନାରାୟଣ ଦାଶ

ଶ୍ରୀ ରଜନୀ ଭୂଷଣ ପାଣି

● ସମ୍ପାଦନା

ଶ୍ରୀ କମଳ ଲୋଚନ ମହାନ୍ତି

● ପରିକଳ୍ପନା ସମ୍ପାଦକ

ଶ୍ରୀ ନଗେନ୍ଦ୍ର ମୋହନ ମହାନ୍ତି

ଏକାମ୍ର ଥିଏଟର୍ସ, ଭୁବନେଶ୍ୱରଙ୍କ ଦ୍ୱାରା ପ୍ରକାଶିତ

କବିଚନ୍ଦ୍ର
ପରିକ୍ରମା

●

ପ୍ରକାଶକାଳ
ଜାନୁୟାରୀ
୧୯୭୮

●

ପ୍ରକାଶକ
ଏକାମ୍ର ଥିଏଟର୍ସ
ଭୁବନେଶ୍ୱର

●

ମୂଲ୍ୟ
ଟ ୮·୦୦

ବନ୍ଧେଇ
ଟ ୧୦·୦୦

# ସୂଚୀ

ହେମନ୍ତ କୁମାର ଦାସ

ନୃସିଙ୍ଗ ଚରଣ ସାହୁ

ଅନନ୍ତ ମିଶ୍ର

ମଧୁ ମହାନ୍ତି

ନରସିଂହ ନନ୍ଦ

ସୀତାକାନ୍ତ ମହାପାତ୍ର

ବସନ୍ତ କୁମାର ପାଣିଗ୍ରାହୀ

ରାମଚନ୍ଦ୍ର ମିଶ୍ର

ରାମଚନ୍ଦ୍ର ମିଶ୍ର

କମଳ ଲୋଚନ ମହାନ୍ତି



# 'କାନ୍ତଚନ୍ଦ୍ର ନମାମି'

—ଶ୍ରୀ ପ୍ରବୋଧ କୁମାର ମିଶ୍ରଃ

ସାହିତ୍ୟ–ସଂସୃତି କଳା–କଳନାଽତିଧନ୍ୟ !
ହେ ମାନ୍ୟ ! କମ୍ର–କମଳା–କଳୟା ପ୍ରଦୀପ୍ତ !
ସ୍ୱାଭାବିକୀ ତବ କୃତିଃ କୃତ–କୃତ୍ୟ–ଦୀପ୍ତ !
ଭକ୍ତ୍ୟା ନମାମି ବରଣୀୟ–କଳାକରଂ ତ୍ୱାମ୍ ।

( ଦୁଇ )

ସାରଲ୍ୟ ଦୀପ୍ତ ! ସରସୋଜ୍ଜ୍ୱଳ–କୀର୍ତ୍ତି–କାନ୍ତ !
ସାରସ୍ୱତଂ ତବ କୃତଂ ସଫଳାମ୍–ବୋଧ୍
କାବ୍ୟୋପମ ! ସ୍ଫୁରଦନନ୍ତ–ବିକାଶି ଦିବ୍ୟଂ
ତ୍ୱତ୍‌ସାଧନଂ ସ୍ଫୁରତି ଲୋକ ଇହ ପ୍ରକାମମ୍ ।

●

# କବିଚନ୍ଦ୍ର କାଳୀଚରଣଙ୍କ ବଂଶଲତା

ନିମାଇଁ ଚରଣ ପଟ୍ଟନାୟକ

- ଦୁର୍ଗାଚରଣ ପଟ୍ଟନାୟକ
  - କାଳୀଚରଣ ପଟ୍ଟନାୟକ
- ମନମୋହନ ପଟ୍ଟନାୟକ
  - (୧) ଅମ୍ବିକା ଚରଣ ପଟ୍ଟନାୟକ
  - (୨) ପାର୍ବତୀ ଚରଣ ପଟ୍ଟନାୟକ
  - (୩) ଭବାନୀ ଚରଣ ପଟ୍ଟନାୟକ
  - (୪) ଅନ୍ନପୂର୍ଣ୍ଣା ଦେଈ

| | | |
|---|---|---|
| ଜନ୍ମସ୍ଥାନ | – | ବଡ଼ମ୍ବା |
| ଜନ୍ମତିଥି | – | ୧୩୦୫ ସାଲ<br>ଧନୁ ଦଶ ଦିନ<br>ବଉଳ ଅମାବାସ୍ୟା<br>ଗୁରୁବାର |

# ଏକାମ୍ର ଥିଏଟର୍ସ
## ଶରତ ଉତ୍ସବ
## ୧୯୭୨

ଏକାମ୍ର ଥିଏଟର୍ସ
ଭୁବନେଶ୍ୱର
କ୍ୟାମ୍ପ–ଜନତା ଥିଏଟର୍ସ
କଟକ

### କବିଚନ୍ଦ୍ର, ଶ୍ରୀଯୁକ୍ତ କାଳୀଚରଣ ପଟ୍ଟନାୟକ, ନାଟ୍ୟାଚାର୍ଯ୍ୟ

ଅକ୍ଷତ ଦୁର୍ବାଦଳ, ବରକୋଳି ପତ୍ର ନେଇ ସ୍ରଷ୍ଟାର ଆମେ ଅଭ୍ୟର୍ଥନା କରିଥାଉଁ ।

ସେହିପରି ଓଡ଼ିଆ ସାହିତ୍ୟ, ସଙ୍ଗୀତ, ରଙ୍ଗମଞ୍ଚକୁ ପ୍ରତିଷ୍ଠା କରି ଗହାସ ଚରିତ୍ରାମୃତରେ ଓଡ଼ିଆ ଜୀବନକୁ ଅର୍ଦ୍ଧଶତାବ୍ଦୀରୁ ଅଧିକ କାଳ ଯେ ରସାପ୍ଲୁତ କରିଛନ୍ତି, ସେହି କବିଗୁରୁଙ୍କୁ ଏକାମ୍ର ଥିଏଟର୍ସ, ଆଜି "କୃଷ୍ଣଲୀଳା" ଅଭିନୟ କରି ବଧେଇ ଜଣାଉଛି ।

ହେ ସ୍ରଷ୍ଟା, ହେ କବି, ହେ ସଙ୍ଗୀତଜ୍ଞ, ହେ ନାଟ୍ୟକାର, ଆପଣଙ୍କର ବହୁବିଧ ପ୍ରତିଭାକୁ ଏକାମ୍ର ଥିଏଟର୍ସର କଳାକାରଗଣ ଦେଶବାସୀଙ୍କ ସହିତ ସ୍ୱର ମିଳାଇ ସ୍ୱାଗତ କରୁଛନ୍ତି ।

ଆପଣଙ୍କର ଦୀର୍ଘଜୀବନ କାମନା କରି, ଆହୁରି ଅଧିକ ଦିନ ଏ ମାଟିର ସାଂସ୍କୃତିକ କ୍ଷେତ୍ରରେ ନେତୃତ୍ୱ ନିଅନ୍ତୁ ବୋଲି ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଛୁ ।

ବିନୀତ
ଏକାମ୍ର ଥିଏଟର୍ସ କଳାକାରଗଣ
ଭୁବନେଶ୍ୱର
୧୩ ଅକ୍ଟୋବର, ୧୯୭୨

●

# ଉତ୍କଳ ସାହିତ୍ୟ ସମାଜ

## ପ୍ରଶଂସା ପତ୍ର

ସାହିତ୍ୟ ସପ୍ତାହ ୧୯୪୪

କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ମହାଶୟଙ୍କୁ

"ନାଟ୍ୟାଗ୍ରର୍ଣ୍ଣୀ"

ଉପାଧି ପ୍ରଦାନ ଉପଲକ୍ଷେ

❊

"ଜୟଦେବେ" ଉତ୍କଳର ଗୌରବ ନିଶାଣ
ଉନ୍ନତ କରିଛ କବି ! ହେ ପ୍ରତିଭବାନ
ଜାତୀୟତା ଦୀପ ଜାଳି
ଜାତି ନିନ୍ଦୁକଙ୍କ ମୁହେଁ ଲଗାଇଛ କାଳି ।

❊

ମନୋଜ୍ଞ ସଙ୍ଗୀତ ନୃତ୍ୟ ଜାତୀୟ ବିଭବ
'ଶ୍ରୀ ଗୀତ ଗୋବିନ୍ଦ' 'ଚମ୍ପୂ' ନାଟ୍ୟ କଉସ୍ତୁଭ
ଆଦି "ନାଟ୍ୟାଗ୍ରର୍ଣ୍ଣୀ" ପଦ
ଅରପୁଛୁ ଘେନ ଆହେ ଗଉରବାସ୍ପଦ

❊

| ଶ୍ରୀ ରାମଚନ୍ଦ୍ର ଭବନ<br>କଟକ<br>୭ । ୪ । ୧୯୪୪ | } | ସଭାପତି–<br>ସମ୍ପାଦକ–ଶ୍ରୀମତୀ ସରଳା ଦେବୀ<br>ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ |
|---|---|---|

●



କେନ୍ଦ୍ର ସଙ୍ଗୀତ ନାଟକ ଏକାଡ଼େମୀ ଦ୍ୱାରା ନୃତ୍ୟ ସଙ୍ଗୀତ ନାଟକର 'ରତ୍ନ ସଦସ୍ୟ'
(ଫେଲୋସିପ୍) ତାମ୍ର ଫଳକ ପ୍ରଦାନ କରୁଛନ୍ତି ଭାରତର ତଦାନୀନ୍ତନ
ଉପରାଷ୍ଟ୍ରପତି ଶ୍ରୀଯୁକ୍ତ ଭି. ଭି. ଗିରି
୧୯୬୯



ବୁର୍ଲା ଜ୍ୟୋତି ବିହାରରେ ସମ୍ବଲପୁର ବିଶ୍ୱବିଦ୍ୟାଳୟଦତ୍ତ
ଡକ୍ଟରେଟ୍ (ଡି.ଲିଟ୍) ଉପାଧି

ତା ୧୨ । ୪ । ୧୯୭୫

# ସାକ୍ଷାତକାର—କବିଚନ୍ଦ୍ରଙ୍କ ସହ

## ଏକ ବିଶେଷ ଭାବେ ଆୟୋଜିତ ସାକ୍ଷାତକାରରେ ଶ୍ରୀ ସତ୍ୟପ୍ରିୟ ମହାନ୍ତି ଓ କବିଚନ୍ଦ୍ର କାଳୀଚରଣ



**ଶ୍ରୀ ମହାନ୍ତି**—ଅନ୍ଧକାରରେ ଆଲୋକର ସନ୍ଧାନ ମିଳିଲା ପରି ଘୋର ଶୈତ୍ୟ ମଧ୍ୟରେ ବହୁଳ ଅମାବାସ୍ୟା ଯେପରି ବସନ୍ତର ସୂଚନା ଦେଇଥାଏ, ଠିକ୍ ସେହିପରି ଏକ ଶୁଭ ବହୁଳ ଅମାବାସ୍ୟାରେ, ଆପଣଙ୍କର, ଓଡ଼ିଶାର ଜଣେ ସାହିତ୍ୟ ରଥି ହିସାବରେ ଜନ୍ମଗ୍ରହଣ କରିବାର ଯେଉଁ ଦିବସ, ସେ ଦିବସଟି ସାରା ଓଡ଼ିଶା ଆଜି ପାଳନ କରିବାକୁ ବ୍ୟାକୁଳ ହୋଇଉଠିଛି । କେବଳ ଘୋର ନିରଶା ଭିତରେ ଆଶାର ସଞ୍ଚାର ଆପଣ ଦେଇଥିଲେ ବୋଲି, ସେହି ବହୁଳ ଅମାବାସ୍ୟା ଆଜି ଆମକୁ ଆପଣଙ୍କ ଜନ୍ମତିଥି ମନେପକାଇ ଥିବାରୁ, ସାଧାରଣ ଭାବରେ ଆମ୍ଭେମାନେ ବହୁଦୂରକୁ ଫେରିଯାଉଛୁ ଏବଂ ଫେରିଯାଇ ଆମେ ଆମ ପୂର୍ବ ବଂଶଧରମାନଙ୍କର ଯେପରି ପ୍ରତିଭା ପ୍ରଭାରେ ଓଡ଼ିଶା ଅଗ୍ରଣୀ ହୋଇଥିଲା, ଯେତେ ଶଙ୍କର, ନାନକ, ରାମାନୁଜ,

ସାଲବେଗ ପର୍ଯ୍ୟନ୍ତ, ଯେଉଁ ପୁରୀଧାମକୁ ନିଜର ପବିତ୍ର ସ୍ଥାନ ବୋଲି ମନେକରିଥିଲେ, ଆପଣ ମଧ୍ୟ ସେହିଠାରେ ଜଗନ୍ନାଥଙ୍କର ସେବା ଅଧିକାରୀ ହୋଇଥିଲେ ଏବଂ ପରିଶେଷରେ ଆପଣ ରମନାମ ଧରି, ରମାୟଣ ଅଭିନୟଠାରୁ ଆରମ୍ଭ କରି, ଚମ୍ପୂ ମାଧ୍ୟମରେ କୃଷ୍ଣଲୀଳାର ଚରମ ପରାକାଷ୍ଠା ପ୍ରଦର୍ଶନ କରି, ଜଗନ୍ନାଥଙ୍କ ସେବକ ହିସାବରେ, ଜଗନ୍ନାଥଙ୍କର ଅତି ପ୍ରିୟ, ଭକ୍ତ ଜୟଦେବ, କବି ଜୟଦେବଙ୍କର ଗୀତଗୋବିନ୍ଦରୁ ଓଡ଼ିଆ-କବି ଜୟଦେବ ବୋଲି ଯେପରି ପ୍ରମାଣ କରିଛନ୍ତି, ରାଗରାଗିଣୀ ମାଧ୍ୟମରେ, ଉଭୟେ ଗୋଟିଏ ସାହିତ୍ୟ ଜଗତର ଅଭୂତପୂର୍ବ ସାଧନା ।



କବିଚନ୍ଦ୍ର—ସବୁ ସତ, ଆପଣ ଯାହା କହିଲେ । ବହୁଳ ଅମାବାସ୍ୟାରେ ମୋର ଜନ୍ମ, ୧୩୦୩ ସାଲ, ଧନୁ ୧୦ ଦିନ । ମୋ ଜନ୍ମଟାର ଗୋଟାଏ ବିଶେଷତ୍ୱ ଅଛି ଯେ, ମୁଁ ଫଟାକପାଳ ନେଇ ଜନ୍ମ ହୋଇଥିଲି । ବାପାଥିଲେ ଦୁର୍ଗା ପୂଜକ, ଭୀଷଣ ଦୁର୍ଗା ପୂଜକ ସେ ଥିଲେ । ଆତ୍ମବଳୀ ଦେଇ ରେଜ୍ ସେ ଯେଉଁ ପୂଜା କରୁଥିଲେ, ଛୁରୀରେ ଛାତିରୁ ଟିକେ ରକ୍ତ ଦେଇ, ଦୁର୍ଗାପୂଜା ସେ କରୁଥିଲେ । ଏଇ ବହୁଳ ଅମାବାସ୍ୟା ଦିନ ମୋର ଜନ୍ମହେଲା । ତା ପୂର୍ବରୁ ବାପାଙ୍କୁ ଠାକୁରାଣୀଙ୍କର ହୁକୁମ ହୋଇଥିଲା ଯେ ବର୍ଷକ ପରେ ଗୋଟିଏ ପୁଅହେବ; ମୋ ବଡ଼ଭାଇ ମରିଯିବା ଦ୍ୱାରା । ବଡଭାଇ ମୋର ଅଷ୍ଟମୀ ଦିନ, ଠାକୁରାଣୀଙ୍କର ଯେତେବେଳେ ସେ ବଳିଦେଉଥିଲେ, ସେତିକି ବେଳେ ସେ ଯାଇଁ ସେଠାରେ କବାଟ ଫିଟାଇ

ଦେଇ ପହଞ୍ଚିଯିବାରୁ, (ସେ ପିଲା ହୋଇଥିଲା), ବାପା ତାକୁ ନେଇ ବୋଉ ପାଖରେ ଛାଡ଼ିଦେଲେ–କହିଲେ ଦେଖ, ସମ୍ଭାଳ, ଯେପରି ଏ ବଞ୍ଚେ । କିନ୍ତୁ ଶେଷରକୁ ସେ ବଡ଼ଭାଇଟି ମୋର ମରିଗଲା । ତାପରେ ବାପା ବସିଲେ ଠାକୁରାଣୀଙ୍କୁ ବିଷର୍ଜନ କରିବା ପାଇଁକି–ସ୍ୱପ୍ନାଦେଶ ହେଲା "ତତେ ମୁଁ ବର୍ଷକ ଭିତରେ ଗୋଟିଏ ପୁଅ ଦେବି ।" ମୁଁ ସେଇ ପୁଅଟି । ଜନ୍ମହେଲିସତ ବହୁଳ ଅମାବାସ୍ୟା ଦିନ, ମାତ୍ର ଫଟା କପାଳ ନେଇ ଜନ୍ମ ହୋଇଥିଲି; କପାଳଟା ମୋର ଫାଟିଥିଲା, ଭଲ ନଥିଲି ମୁଁ, ସୁସ୍ଥ ନଥିଲି । ବାପା ଫେରେ ଯେତେବେଳେ ଠାକୁରାଣୀଙ୍କୁ ବିଷର୍ଜନ କରିବାକୁ ବସିଲେ ସେତେବେଳେ କହିଲେ "ପାଷାଣଭେଦି ଆଣିକରି ତା ମୁଣ୍ଡରେ ଦେ', ସୋରିଷ ତେଲରେ, ତାହେଲେ ଭଲ ହୋଇଯିବ ।" ପାଷାଣଭେଦି କୋଉଠୁ ପାଇବେ ? ମଇଁଷିଆଳ ଗଉଡ଼ଙ୍କଠୁଁ ବାପା ଯାଇଁ ସଂଗ୍ରହ କରି ଆଣିଲେ, ଦବାରୁ ମୁଁ ଭଲ ହୋଇଗଲି । ପିଲାଦିନୁ ମୋର ଜନ୍ମର ଘଟଣାଟା ଏୟା । ମୁଁ ଫଟା-କପାଳ ହେଇ ଜନ୍ମ ହେଇଥିଲି ବୋଲି, ଏବେ ମଧ୍ୟ ମୋ କପାଳରେ ଦାଗଟା ଅଛି; ଫଟା ଦାଗଟା ମଧ୍ୟ ବର୍ତ୍ତମାନ ସୁଦ୍ଧା ଅଛି । ଯେକୌଣସି ଲୋକ ଅନୁଭବ କରିପାରିବେ, କପାଳଟା ଫଟା ମୋର । ସେଇଥିପାଇ ମୁଁ କହେ 'ମୋର ଜନ୍ମ ଫଟାକପାଳ ନେଇ, ମୁଁ ଫଟାକପାଳିଆଟାଏ । ଏମିତି ଜନ୍ମ ହୋଇଥିଲା ମୋର ।

ଶ୍ରୀ ମହାନ୍ତି–ସେ ଫଟା ବୀଣାରେ ଆପଣ ଯେଉଁ ବିପଞ୍ଚୁ ତାନ ଉଠାଇଲେ ସେ ବିପଞ୍ଚୁ ତାନ ଆଜି ଓଡ଼ିଶାରେ ଆପଣଙ୍କୁ ଚିରକାଳ ପାଇଁ ଅମର କରି ରଖିବ । ମୋର ବହୁ ପୁରାତନ କଥା ମନେପଡୁଛି । ଆମର ପ୍ରଥମ ଗାୟକ ହିସାବରେ, ଶିକ୍ଷିତ ଗାୟକ ହିସାବରେ, ଭଦ୍ର ଗାୟକ ହିସାବରେ ଗୋକୁଳ ଶ୍ରୀଚନ୍ଦନଙ୍କୁ ଆମେ ସ୍ମରଣ କରୁଛୁ । ଆମେସବୁ Law ପଢିଲା ବେଳେ ସେ ଆସି ଆମକୁ କହିଲେ–ଯଦି ଜଣେ କେହି ଆମର ଯେତେ ଚମ୍ପୁ ଅଛି, ସେଥିମଧ୍ୟରୁ ଗୋଟିଏ ଚମ୍ପୁକୁ ଶୁଦ୍ଧ ରାଗିଣୀରେ, ଠିକ୍ ଭାବରେ ଗାନ୍ କରିପାରନ୍ତା, ତାହେଲେ ମୋର ଗାୟକ ଜୀବନ ସାର୍ଥକ ହୁଅନ୍ତା । ସେ ଯଦି ବଞ୍ଚିଥାନ୍ତେ, ଦେଖିଥାନ୍ତେ, ସମସ୍ତ ଚମ୍ପୁକୁ ମୂର୍ତ୍ତ-ପରିଗ୍ରହ କରାଇଲାଭଳିଆ ଜଣେ ସାଧକ, ଜଣେ ଗାୟକ ସ୍ୱରଲିପି କରି, ସାରା ବିଶ୍ୱରେ ପ୍ରତିପାଦିତ କଲେ ଯେ, ଓଡ଼ିଆ ଜାତି କେବଳ ଛନ୍ଦମୟ ସଙ୍ଗୀତରେ ମଧ୍ୟ ଚରମ ପରାକାଷ୍ଠା ଭାବଜଗତରେ ଲାଭ କରିପାରିଛି ।

କବିଚନ୍ଦ୍ର–ଚମ୍ପୁ ଯେତେବେଳେ ଚଳନ ନଥିଲା, ସେତେବେଳେ ମୁଁ ତାକୁ ନାଟକ ରୂପ ଦେଇଥିଲି–ଚମ୍ପୁ ନାଟକ ତିଆରି କଲି; ପ୍ରଥମରୁ 'କ' ଠାରୁ 'କ୍ଷ'

ପର୍ଯ୍ୟନ୍ତ ସମସ୍ତ ଗୀତ ଗୁଡ଼ିକୁ ନେଇ । ଚମ୍ପୂର ଗୋଟିଏ ବିଶେଷତ୍ୱ ହେଉଛି, ଏ ଯେଉଁ ଗୀତଗୁଡ଼ିକ ସେ ଲେଖିଛନ୍ତି, ଭବାନୁସାରେ ଗୀତ ଲେଖିଛନ୍ତି. ଭବାନୁସାରେ ରାଗ ମଧ୍ୟ ସେ ଦେଇଛନ୍ତି—କବିସୂର୍ଯ୍ୟ ଦେଇଛନ୍ତି । ସେଇଥି ପାଇଁ ମୁଁ ତାଙ୍କୁ ଅପେକ୍ଷା କରି, ସେଇଠି ମୁଁ ତିଆରି କରି, ଚମ୍ପୂ ନାଟକଟା ମୁଁ play କରିଥିଲି । ତା'ପରେ ଗୀତଗୋବିନ୍ଦ ମୁଁ ଅଭିନୟ କଲି ସେଇଠି । ଚମ୍ପୂ ନାଟକ ପରେ ପରେ ଗୀତଗୋବିନ୍ଦ ମୁଁ ଅଭିନୟ କରିଥିଲି । ଗୀତଗୋବିନ୍ଦ ନାଟକ ଚମ୍ପୂ ନାଟକ ପରେ ମୁଁ ଲେଖିଥିଲି । ସେତେବେଳେ ରାସଲୀଳା ପାର୍ଟି—ରାସପାର୍ଟି ମୋର ଗୋଟିଏ ଥିଲା । 'ସାକ୍ଷୀଗୋପାଳ ନାଟ୍ୟସଂଘ' ସେ ନାଟ୍ୟ ସଂଘର ନା' ଥିଲା । ମୁଁ ସେତେବେଳେ ଚମ୍ପୂ ଓ ଗୀତଗୋବିନ୍ଦ ଏଇସବୁ ନାଟକ କରୁଥିଲି । ଅନ୍ୟାନ୍ୟ ନାଟକବି ଲେଖିଛି, ରାଧାକୃଷ୍ଣ ଲୀଳାର । କିନ୍ତୁ ତା' ସଙ୍ଗେ ସଙ୍ଗେ ଏ ଯୋଡ଼ାକ ନାଟକ ମୋର ବେଶୀ ଆଦରଣୀୟ ହେଉଥିଲା; ଲୋକେ ଯ'କୁ ବେଶୀ ଗ୍ରହଣ କରୁଥିଲେ । ଏଇଟା ହିଁ ମୋର ରାସଲୀଳାର ସାର୍ଥକତା ।



ଶ୍ରୀ ମହାନ୍ତି—ଏବଂ ପରିଶେଷରେ ଆପଣ ଆମର ଆଧ୍ୟାତ୍ମିକ ଜଗତରେ, ବିଶେଷ କରି ଓଡ଼ିଶା, ଯେଉଁଠିକି ବୈଷମ୍ୟ ଭିତରେ ସାମ୍ୟ ପ୍ରତିଷ୍ଠା କରି, ସାରା ଭାରତବର୍ଷରେ ନୁହେଁ, ସାରା ପୃଥିବୀକୁ ଆଲୋକିତ କରିଛି, ଏବଂ

ଆନ୍ତର୍ଜାତୀୟ କୃଷ୍ଣ ସଚେତନ ସମ୍ପ୍ରଦାୟ, ଆଜି ସେହି ଜଗନ୍ନାଥ ଧାମରେ କୃଷ୍ଣ ପୂଜାରେ ମଧ୍ୟ ଚରମ ସାର୍ଥକତା ଲାଭକରିବାକୁ ବସିଛନ୍ତି, ସେଇ 'ଗୁରୁବାଦ' ଉପରେ ପ୍ରତିଷ୍ଠିତ ଧର୍ମକୁ ଆପଣ ବର୍ତ୍ତମାନ ଶେଷ ଜୀବନରେ ଆଶ୍ରୟକରି, 'ଗୁରୁଦାସ' ଭାବରେ ଆତ୍ମଗୋପନ କରି, ଯେଉଁ କବିତାମାନ ଲେଖିଛନ୍ତି, ସେ କବିତା ଭବିଷ୍ୟତ ବଂଶଧରଙ୍କ ପକ୍ଷରେ ଗୋଟିଏ ସ୍ମରଣିକା ହୋଇ ରହିବ ।

କବିଚନ୍ଦ୍ର–ମୁଁ ତ' ନାଁ' ଦେବାକୁ ନିଜର ଗଢ଼ିନେଇ ନାହିଁ । ଏଇ ଯେଉଁ ଗୀତଗୁଡ଼ିକ ଲେଖିଲି ମୁଁ, ଆମର ଠାକୁରଙ୍କ ପ ଇଁକି–ନିଗମାନନ୍ଦ ଠାକୁରଙ୍କ ସମ୍ପର୍କରେ ଯେଉଁ ଗୀତଗୁଡ଼ିକ ଲେଖିଲି ତାଙ୍କରି ଭକ୍ତମାନେ ପଢ଼ିବା ପାଇଁ, ଗାଇବା ପାଇଁ, ସେ ଗୁଡ଼ିକରେ ମୁଁ ମୋର ନାଁ' ଦେଇ ନାହିଁ, ମୁଁ ପରିଚୟ ଦେବାକୁ ଚାହିଁ ନାହିଁ । ମୁଁ ଲେଖିଛି 'ଗୁରୁଦାସ' । ଆଉ ଗୋଟିଏ କଥା, ସେଗୀତ ଗୁଡ଼ିକରେ ଗୋଟିଏ ବିଶେଷତ୍ୱ ଅଛି; ଭାବାନୁସାରେ, ସ୍ୱର ମୁଁ ଦେଇଛି ସେ ଗୀତ ଗୁଡ଼ିକୁ । ଏବଂ ଭାଷା ଏମିତି ଦେଇଛି ଯାହାକୁ ସମସ୍ତେ ବୁଝିବେ । ମୋର ଏତିକି ଧାରଣା ଯେ, ଯିଏ ଗୀତ ଲେଖେ, ସେ ତା ପାଇଁ ଲେଖେ ନାହିଁ, ଲୋକଙ୍କ ପାଇଁ ଲେଖେ । ବୁଝିବେ, ଲୋକଙ୍କର ତା ପ୍ରତି ଧାରଣା ଆସିବ ଭଲ; ଏଇ ଭାବରେ ମୁଁ ଗୀତ ଲେଖିଛି । ଅନେକ ଗୀତ ଲେଖିଛି, ସବୁ ଗୀତ ସେଇ ଧାରଣାରେ ମୁଁ ଲେଖିଛି ।

ଶ୍ରୀ ମହାନ୍ତି–ପରମହଂସ, ପରିବ୍ରାଜକାଚାର୍ଯ୍ୟ ଶ୍ରୀମତ୍ ସ୍ୱାମୀ ନିଗମାନନ୍ଦ ସରସ୍ୱତୀ ଦେବଙ୍କ ପ୍ରତିଷ୍ଠିତ ନୀଳାଚଳ ସାରସ୍ୱତ ସଙ୍ଘର ଜଣେ ପ୍ରତିଷ୍ଠିତ ବ୍ୟକ୍ତି ହିସାବରେ, ଆପଣ ଆଦର୍ଶ ଗୃହସ୍ଥ ଜୀବନ ଗଠନ କରିବାରେ, ବିଶେଷକରି ନାରୀମାନେ କିପରି ଆଦର୍ଶ ଗୃହିଣୀ ହେବେ, ସେଥିପାଇଁ ଯେଉଁ ସାଧନା କରିଛନ୍ତି ତାର ସନ୍ଧାନ ଏପର୍ଯ୍ୟନ୍ତ ସାହିତ୍ୟ ରସିକମାନେ ପୂରାପୂରି ନେଇ ନାହାନ୍ତି । ଯେତେବେଳେ ନେବେ ସେମାନେ ଦେଖିବେ, ଆଦର୍ଶ ଗୃହିଣୀ ପାଇଁ ଆପଣଙ୍କର ଯେଉଁ 'ସତୀ ନୀତି' ଗୀତବହିଟି 'କଳା କାଇଁଚମାଳି' ବୃତ୍ତରେ ଅଛି–ସେ ଗୀତଟି ଏତେ ପ୍ରଚାରିତ ହେଉଛି ପୁରପଲ୍ଲୀ ଅଞ୍ଚଳରେ ! ଆଦର୍ଶ ଗୃହିଣୀ ଗଠନ ପାଇଁ ତାହା କେତେ ଉପାଦେୟ, ତାକୁ କହିବା ପାଇଁ ମୋର ସାହିତ୍ୟ ଜ୍ଞାନ ସେତେ ନାହିଁ । ତେଣୁ ଶତମୁଖରେ ମଧ୍ୟ ତାର ମୂଲ୍ୟ ଏଠି ଦେଇପାରିବି ନାହିଁ ଏବଂ ତା'ପରେ ଆପଣ 'ପ୍ରଗତି ଶତକ' ବୋଲି ଯେଉଁ କବିତାଗୁଚ୍ଛ କରିଛନ୍ତି, ଆଧ୍ୟାତ୍ମିକ ଜଗତରେ ସମ୍ପୂର୍ଣ୍ଣ ଭାବେ ସେ ଗୋଟିଏ ନୂତନ ଦିଗ୍-ଦର୍ଶନ ଦେଇଛି ।

କବିଚନ୍ଦ୍ର–କ'ଣ ଦେଇଛି, କ'ଣ ନଦେଇଛି, ମୁଁ କହିପାରିବି ନାହିଁ । ମୋର ଗୋଟିଏ ଧାରଣା ଯେ, ମୁଁ ପ୍ରଥମରୁ ତ କହିରଖିଛି ଯେ, ଗୀତ ଗୀତିକାର ଲେଖେନାହିଁ । ମୋ ଧାରଣା ଏଇୟା ଯେ, ମୁଁ ଜଣେ ଭଲ 'ଷ୍ଟେନୋଗ୍ରାଫର୍' । ମୋତେ ଯାହା ଗୁରୁ କହିଦିଅନ୍ତି, ଯେମିତି ଭବରେ ବତେଇ ଦିଅନ୍ତି, ମୁଁ ସେଇଟା ଲେଖେ । ମୋର ନିଜର ଧାରଣା ନୁହେଁ ଯେ, ମୁଁ ଲେଖୁଛି; ଏ ଧାରଣା ମୋର ମୋଟେ ନାହିଁ । ଠାକୁରଙ୍କର ଯାହା ଆଦେଶ, ଯାହା ନିର୍ଦ୍ଦେଶ, ଯେମିତି ଭବରେ ସେ କହିଦିଅନ୍ତି, ମୁଁ ସେମିତି ଭବରେ ଗୀତ ଲେଖେ । ଏଇ ଧାରଣାରେ ମୁଁ ଚାଲିଛି ଏବଂ ସବୁବେଳେ ସେଇ ଧାରଣାରେ ମୁଁ ଅଛି ଯେ, ତୁମେ ଗୋଟେ କ'ଣ ଲେଖିବାକୁ କହିବ, ମୁଁ 'ତାଙ୍କୁ' ପ୍ରଥମେ ଆଖିବୁଜି ପଚାରିଦିଏ ଯେ, କ'ଣ କହିବ କହ । ତାପରେ ମୁଁ ମୋର କଲମ ଧରେ । ଏଇଟା ମୋର ଧାରଣା ସବୁବେଳେରହିଛି । ସେଥିପାଇଁ ମୁଁ ମୋ ନାଁ ରଖିଛି "ଗୁରୁଦାସ" ।



ଛା ମହାନ୍ତି–ଗୃହସ୍ଥ ଜୀବନକୁ ମଧୁମୟ କରିବା ପାଇଁ ଆଦର୍ଶ ପୁରୁଷ ଓ ଆଦର୍ଶନାରୀ ଦିନେ ଭରତ ବର୍ଷରେ ଆମର ପରମାରାଧ୍ୟ, (ସର୍ବଶ୍ରେଷ୍ଠ ଅବତାର ବୋଲି କହିଲେ, ଠିକ୍ ହେବ ନାହିଁ, କାରଣ ସେ ଅବତାର ନୁହଁନ୍ତି । "କୃଷ୍ଣସ୍ତୁ ଭଗବାନସ୍ୱୟଂ" ସେହି ଶ୍ରୀକୃଷ୍ଣ ଯେପରି କରିଥିଲେ–ଜଣେ ଅର୍ଜୁନ

ଗଢିଥିଲେ, ଆଦର୍ଶ ପୁରୁଷ ହିସାବରେ; ଆଉ ଆଦର୍ଶନାରୀ ହିସାବରେ ସୁଭଦ୍ରାଙ୍କୁ ରୂପ ଦେଇଥିଲେ । ଏବଂ ସେ ଉଭୟଙ୍କ ପରିଣୟ ପାଇଁ, ସେ ନିଜେ ଯେପରି ଅର୍ଜୁନକୁ ସାହାଯ୍ୟ କରିଥିଲେ; ସୁଭଦ୍ରାଙ୍କୁ ମଧ୍ୟ ସେହିପରି ସାହାଯ୍ୟ କରିଥିଲେ । ସେଥିରୁ ଦେଖାଯାଇଥିଲା ଯେ, ଭାରତବର୍ଷରେ ନାରୀ, ସେବିକାଖାଲି ନୁହେଁ, ନାରୀ ଅତ୍ୟାଗ୍ରରୀତା ନୁହେଁ—ନାରୀ ସ୍ୱାଧୀନଭାବରେ ସ୍ୱାମୀ ବାଛିବାର ଯେଉଁ ଅଧିକାର ଥିଲା, ସେ ପ୍ରତିପାଦିତ କରିଥିଲେ । ଏବଂ ସେଇ ଦୃଷ୍ଟିରୁ ଆପଣ ବର୍ତ୍ତମାନ ସେହିପରି ଆଦର୍ଶନାରୀ ଏବଂ ଆଦର୍ଶ ପୁରୁଷ ସୃଷ୍ଟି କରିବା ପାଇଁ, ଆପଣଙ୍କର "ପ୍ରଣତି ଶତକ", ସତୀନୀତି, ଏବଂ ଏଯେଉଁ ନୀଳାଚଳ ସାରସତ୍ୱ ସଂଘ ତରଫରୁ ଆଦର୍ଶ ଗୃହସ୍ଥ ଜୀବନ ସୃଷ୍ଟି କରିବା ପାଇଁ ଗୋଟିଏ ତ୍ରୈମାସିକ ପତ୍ରିକା "ସଂଘ ସେବକ" ନାମରେ ପ୍ରକାଶିତ ହେଉଛି, ସେଥିରେ ଯେଉଁ ଅମୂଲ୍ୟ ସଂଗୀତ ଆପଣ ପ୍ରଦାନ କରୁଛନ୍ତି; ଖାଲି ଶ୍ରୁତି ମଧୁର ନୁହେଁ, ଭାବ ଗାମ୍ଭିର୍ଯ୍ୟ ହିସାବରେ, ଉତ୍କଳ ସାହିତ୍ୟରେ ଅମର—ରତ୍ନ ଆପଣ ସାଇତି ଯାଇଛନ୍ତି । ସେଥିପାଇଁ ଆପଣଙ୍କ ଜନ୍ମ ଦିବସକୁ, ଉତ୍କଳ ସାହିତ୍ୟର ଅଭିବୃଦ୍ଧି ଦିବସ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

କବିଚନ୍ଦ୍ର—ମୁଁ ସେ ବିଷୟରେ କିଛି କହିବି ନାହିଁ ଆଉ । ମୋର ସବୁ ଠାକୁରଙ୍କ ଉପରେ ନିର୍ଭର କରେ ।

ସାକ୍ଷାତକାର ପରିଗ୍ରହଣା— ନଗେନ୍ଦ୍ର ମୋହନ ମହାନ୍ତି

## ଶ୍ରୀଯୁକ୍ତ କାଳୀଚରଣ ପଟ୍ଟନାୟକ

### ବଡ଼ଭାଇ

ମନର ଉଚ୍ଛ୍ୱାସ ମୋର ରଖିପାରିଲିନି ତେବେ ମନର ଭିତରେ,
ବଡ଼ଭାଇ, ସୁସମ୍ବାଦ ଶୁଣିଲି ମୁଁ ଯେଉଁ ମୁହୂର୍ତ୍ତରେ–
ତୁମର ଜୀବନଲିପି ସୃଜନୀର ସାରସ୍ୱତ ଗୁଣେ
ଭାରତୀୟ ଏକାଡେମୀ ପୁରସ୍କାର ପାଇଅଛ ତୁମେ ।

"ଆନଂଦର ସମ୍ବର୍ଦ୍ଧନା, କାଳିଭାଇ ନିଅ ତୁମେ ନିଅ ମୋର ଆଜ,
ଏକାମ୍ର ନଗରେ ଏବେ ଯାଉଚି ମୁଁ, ସେଠି ମୋର ଅଛି କିଛି କାର୍ଯ୍ୟ ।
କାଲି ଅପରାହ୍ଣେ ଫେରିଯିବି ନିଶ୍ଚେ ତୁମରି ସଦନେ ।"

ଫୋନ୍‌ରେ ମନର ଭାବ ଜଣାଇଲି ଅତି ସନ୍ତର୍ପଣେ ।

ମନ ହେଲା ନାହିଁ କିଂତୁ ସେ ଦିଗକୁ କଲି ପ୍ରତ୍ୟାଖ୍ୟାନ,
'ତୁମରି ସାଥିରେ ଏଇ ବର୍ତ୍ତମାନ, ହେଉ ବର୍ତ୍ତମାନ' ।
ବାହାରିଲି ତୁମ ପଥେ, ପହଂଚିଲି ତୁମର ନିବାସେ,
ମୋତେ ଦେଖି ଦେଖି ତୁମେ ଅନାଇଲ ନିର୍ବାକ ସହାସେ ।

ମନେକରିଥିଲି ମୁହିଁ, ତୁମ ପାଖେ ବସିଥିବେ କେତେ ବନ୍ଧୁ, କବି, କଳାକାର,
ଗୌରବେ ତୁମକୁ ଘେରି ଗୁଂଜରଣ ତୋଳୁଥିବେ ମୁଗ୍‌ଧ ଅର୍ଚ୍ଚନାର ।
ରୁକ୍ଷୁଷ ଦେଖିଲି କିଂତୁ ତୁମେ ସେଠି ଏକାଂତ, ଏକାକୀ,
ମୋ ଦେଶର ବିଦଗ୍‌ଧତା ବୁଝିବାକୁ ଆଉକିଛି ରହିଲାନି ବାକି ।

ଛୋଟ ଫୁଲ ତୋଡ଼ାଟିଏ ନେଇଥିଲି ଅତିଶୟ ଆସକ୍ତ ଅଂତରେ,
ପ୍ରଣିପାତଟିଏ ଦେଇ, ସଁପିଦେଲି ତୁମରି ହସ୍ତରେ ।
ବିସ୍ମୟର ଦୃଷ୍ଟି ତବ ସ୍ଥିର ରଖି କେତୋଟି ମୁହୂର୍ତ୍ତ,
କେତୋଟି ମୁହୂର୍ତ୍ତ ତୁମେ ରହିଥିଲ ମୁଗ୍‌ଧ ଅଭିଭୂତ ।

ତୂଷ୍ଣୀ ଭଂଗି ବୋଇଲି ମୁଁ—"କାଳିଭଇ, ବାକିଥିଲା ଶେଷରେ ଏତିକି,
ଆଜି ତାହା ମିଳିଗଲା, ଜୀବନର ଶେଷ ସୀମାଠିକି ।
ଆଉ ଯେତେ ରୂପ ଧ୍ରୁରେ ପ୍ରସାଦିତ ହୋଇଥିଲ ପୂର୍ବେ,
ଦିବସର ପ୍ରଭା ପରି ତୁମ ମୁଖ ଆଲୋକିତ କରିଥିଲା ଶୁଭେ ।

ମାତ୍ର ଆଜି ଦିନାଂତରେ ଏ ରଂଜନ ଅନୁପମ ହିରଣ୍ମୟ ବିଭା,
ରଂଜିତ ବ୍ୟଂଜିତ ସିନା କରିଅଛି ତୁମର ପ୍ରତିଭା ।
କି ଅଦ୍ଭୁତ ଏବେ ତୁମେ ମୋ ଦେଶର ହେ କଳା ପ୍ରପନ୍ନ,
ମୁଗ୍‌ଧ ହୃଦୟର ମୋର ଅନୁରକ୍ତ ଏଇ ଉଚ୍ଚାରଣ ।"

"ରାଧାମୋହନ ରେ କହ, ତୋ ଭଳି ବୁଝିଛି ମତେ କିଏ ମୋ ଦେଶରେ ?
ସେଥିପାଇଁ ତୋ ହାତରୁ ଜୁଇ ମୁଁ ତ ମାଗିଚି ଶେଷରେ ।"
ଉଚ୍ଛ୍ୱାସ ଗଦ୍‌ଗଦ କଂଠେ ଢାଳି ଦେଲ ମନର ଜୁଆର,
ତୁମର ଆଖିରୁ ଧାର, ମୋ ଆଖିରୁ ଧାର ।

"ଦୂରରେ ରହିଚୁ ତୁଚ, ବଢ଼ାଇଲେ ପାଉ ନାହିଁ ହାତ,
ପଶ୍ଚାତାପ କରିବାକୁ ଭୁଲିବୁ ନି, ବେଶି ବାଟ ନାହିଁ ମୋ ସୀମାଂତ ।
ଜାଣେ ନାହିଁ କେତେବେଳେ ଭଂଗୁର ଗେଗଭୂ ମୋର ପଡ଼ିବରେ ଲେଟି,
ଆଉ କିଛି କ୍ଷଣ ରହ, ଆଜି ଏଠି ସାଥି ହୋଇ ଖାଇବା ଦିଓଟି ।"

ନମସ୍କାର

ରାଧାମୋହନ ଗଡ଼ନାୟକ

●

# ଅଗ୍ରଲେଖା

କଳ୍ପନା ସହିତ ବାସ୍ତବତାର ତାଳ ନ ରହିଲେ ସ୍ରଷ୍ଟାର ସୃଷ୍ଟି ପୂର୍ଣ୍ଣାଙ୍ଗ ଲାଭ କରି ନଥାଏ । କଳ୍ପନା ବିକାଶ ସହିତ ମାନବଧର୍ମୀ ପାରିପାର୍ଶ୍ୱିକ ଅବସ୍ଥାର ରଙ୍ଗ ପୁଟ ଦେଇ ମାନସିକ ମୂଲ୍ୟବୋଧର ଯେ ନିଖୁଣ ରୂପ ଦେଇପାରେ ସେହି ହିଁ ସ୍ରଷ୍ଟା ।

ପ୍ରତିଭାର ବରପୁତ୍ର ବିଶ୍ୱ ବନ୍ଦନୀୟ ।

ଅନୁଭୂତି ବ୍ୟକ୍ତିକେନ୍ଦ୍ରିକ ନ ହୋଇ ମାନବଧର୍ମୀ ହେଲେ ସାହିତ୍ୟ କୃତି ସୀମିତ ସମାଜ କେବଳ ନୁହେଁ, ଜାତି ନୁହେଁ, ଭାଷାନ୍ତର ଘଟିଲେ ସ୍ରଷ୍ଟାର ସୃଷ୍ଟି ବିଶ୍ୱ ଦରବାରରେ ସବୁ ବାଦର ଅବସାନ ଘଟାଇ ମାନବ ଧର୍ମ ପ୍ରତିଷ୍ଠା କରେ ।

କାଳ ଓ ଦୂରତା ଜୟ କରି କବିର କଳ୍ପନା ବିଶ୍ୱ ସାହିତ୍ୟ ଦରବାରରେ ସ୍ୱୀକୃତି ଲାଭ କରିଥାଏ ।

ଅନୁଭୂତି ଯେଉଁଠି ସ୍ୱକୀୟ ସ୍ୱାର୍ଥ ପାଇଁ ଉଦ୍ଦିଷ୍ଟ, ସେ ଶ୍ରେଣୀର ଦୁର୍ବଳ ସାହିତ୍ୟ ମହାକାଶରେ ଧୂମକେତୁ ପରି କିଞ୍ଚିତ ସମୟ ପାଇଁ ଚାଞ୍ଚଲ୍ୟ ସୃଷ୍ଟି କରିପାରେ । କିନ୍ତୁ ତାହା ନଭମଣ୍ଡଳରେ ଧ୍ରୁବ ତାରା ନୁହେଁ କିମ୍ବା ସପ୍ତର୍ଷିମଣ୍ଡଳର ତାରକାପୁଞ୍ଜ ନୁହେଁ ।

ଅନୁଭୂତିର ଧାରାକୁ ବହୁଭାବରେ ବିଶ୍ଳେଷଣ କରାଯାଇଥାଏ । ବ୍ୟକ୍ତିଗତ ସୁବିଧା, ଅସୁବିଧା, ପ୍ରେମ, ଶ୍ରେଣୀ ସଂଘର୍ଷ, ଜାତୀୟ ଓ ଆନ୍ତର୍ଜାତିୟ ବହୁବିଧ ସମସ୍ୟା, ଯୁଦ୍ଧ ବିଗ୍ରହ, ଜୟ ପରାଜୟ ଇତ୍ୟାଦି ଇତ୍ୟାଦି । ସାମାଜିକ, ଅର୍ଥନୈତିକ ତଥା ସାଂସ୍କୃତିକ ଚେତନା ରନ୍ଧ୍ର ମଧ୍ୟ

ଅନୁଭୂତିକୁ କମ୍ ପ୍ରଭାବିତ କରେ ନାହିଁ । ଏ ସବୁର ଆଭରଣ ତଳେ ମଣିଷ ଆତ୍ମାର ପରିପୂର୍ଣ୍ଣ ବିକାଶ ପାଇଁ କବି, ଲେଖକ, ନାଟ୍ୟକାର କଳାକାରର ଉଦାତ୍ତ ସ୍ୱର ଝଙ୍କାର ଯୁଗ ଯୁଗକୁ ସ୍ପନ୍ଦିତ ହୁଏ ।

ବିଂଶ ଶତାବ୍ଦୀରେ ଉତ୍କଳରେ ବହୁ ସ୍ରଷ୍ଟା ଜନ୍ମ ନେଇଛନ୍ତି ।

ଔପନ୍ୟାସିକ ଫକୀର ମୋହନ । ଛମାଣ ଆଠ ଗୁଣ୍ଠ, ବିଶ୍ୱ ତରଙ୍ଗର ନିଷ୍ପେଷିତ ମଣିଷର କରୁଣ କାହାଣୀ । ଭଗିଆ, ସାରିଆ ଚରିତ୍ର ବିଶ୍ୱ ଦରବାରରେ ଏକ ଏକ ଅମୂଲ୍ୟ ସାଙ୍କେତିକ ବିପ୍ଳବ ।

ମଣିଷକୁ ଶୋଷଣହୀନ ସମାଜ ତିଆରି ଏକ ଜନ ମଙ୍ଗଳ ସମାଜ ଗଠନ ପାଇଁ ଆତ୍ମିକ ଆହ୍ୱାନର ତରଙ୍ଗ ସୃଷ୍ଟି କରଯାଇଛି । ବାସ୍ତବତାକୁ ଓ ଅନୁଭୂତିକୁ ମିଶାଇ ମହାକୋଣାର୍କ ଗଢି ଦେଇଗଲେ ଉପନ୍ୟାସ-ସମ୍ରାଟ ଫକୀରମୋହନ । ମାମୁଁ, ଲଛମା ପ୍ରଭୃତି ଉପନ୍ୟାସରେ ତାଙ୍କକାଳୀନ ସମାଜରେ ଚଳବୁଲ କରିଥିବା ବହୁ ଚରିତ୍ରର ନିପୁଣ ଚିତ୍ରଣ ଓ ମାନବ-ଧର୍ମୀ ମୂଲ୍ୟାୟନ କରି ଓଡ଼ିଆ ଉପନ୍ୟାସର ମୂଳଦୁଆ ପକାଇ ଗୋଟାଏ ଭାଷାକୁ ପୃଥିବୀ ଦରବାରରେ ସ୍ୱକୀୟ ରୀତିରେ ଅମର କରିଗଲେ ।

କବିବର ରାଧାନାଥ । ଦରବାର । ଉଚ୍ଚପଦସ୍ଥ କର୍ମଚାରୀ ହିସାବରେ ବାରବାଟିରେ ଉଚ୍ଚପଦସ୍ଥ ବିଲାତୀ ଓ ଦେଶୀ ସାହେବଙ୍କ ମେଳରେ ଯେଉଁ ଅନୁଭୂତି ସଞ୍ଚୟ କରିଥିଲେ, ମଣିଷ ଧର୍ମକୁ ବିରୁଦ୍ଧାଚରଣ କରି ବଡ଼ ହାକିମମାନଙ୍କ ଭିତରେ ଯେଉଁ ପଦ ଲାଳସା ଓ ଅନୁଗ୍ରହ ପାଇଁ ପ୍ରତିଦ୍ୱନ୍ଦିତା ସେ ଲକ୍ଷ କରିଥିଲେ 'ଦରବାର' କବିତାରେ ତା'ର ବାସ୍ତବଧର୍ମୀ ଓ ବହୁରୂପାତ୍ମକ ଚିତ୍ରଣ କରି ଜାତୀୟ ଜୀବନରେ ମହାସ୍ଫୁଲିଙ୍ଗର ଇନ୍ଧନ ଯୋଗାଇ ଦେଲେ ।

ଚିଲିକା, ମହିମେଶ୍ୱରୀ, ଉଷା ଏପରିକି ପାର୍ବତୀ କାବ୍ୟ ମଣିଷ ଜଗିଥର ଏକ ଏକ ଅଭାବନୀୟ ଆଲେଖ୍ୟ । ସାର୍ଥକ ସୃଷ୍ଟି ହିସାବରେ ଏକ ଏକ କ୍ଳାସିକ୍ ।

ଅନ୍ୟ ଜଣେ ଯୋଗଜନ୍ମା କବି ଡକ୍ଟର ମାନସିଂହ । ଜୀବନର ବହୁ ଅନୁଭୂତିର ନିର୍ଯ୍ୟାସ କମଳାୟନ ମହାକାବ୍ୟ ଏ ଯୁଗର ଏକ ଗୌରବମୟ ସୃଷ୍ଟି । ବାସ୍ତବଧର୍ମୀ କବି ଡକ୍ଟର ମାନସିଂହ, କଳ୍ପନାବିଳାସୀ

ମାନସିଂହ । କମଳ, କରୁଣା, ସଙ୍ଘମିତ୍ରାଙ୍କୁ ନେଇ ବିଶ୍ୱ-ପରିକ୍ରମା କରଇ ଏକ ଆନ୍ତର୍ଜାତିକ ମାନବ ସମାଜ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ସ୍ୱଦେଶରେ ଘଟି ଯାଉଥିବା ରାଜନୈତିକ ପଂକିଳତା, ସାମାଜିକ ଦୁର୍ବଳତା ଓ ଜନ-ଜୀବନର ନିଷ୍କ୍ରିୟତା ଉପରେ ତୀବ୍ର କଟାକ୍ଷପାତ କରିଅଛନ୍ତି । ଜନ୍ମମାଟିର ସର୍ବବିଧ ଉନ୍ନତିର ସ୍ୱପ୍ନ ନେଇ ଏକ କମନୀୟ ତାଜମହଲ ସୃଷ୍ଟି କରିଗଲେ । ତାଜମହଲ କଥା କହେନା । କମଳାୟନ କଥା କହେ । ଇଙ୍ଗିତ ଦିଏ । ଆହ୍ୱାନ ଦିଏ । ବିଦ୍ରୋହ କରି ଜନସମାଜର କଲ୍ୟାଣ କରିବା ପାଇଁ ମଣିଷ ମନରେ ଉଷ୍ଣତା ଆଣିଦିଏ ।

ଅର୍ଦ୍ଧଶତାବ୍ଦୀ ବ୍ୟାପୀ କି ବିରାଟ ସାହିତ୍ୟ ସାଧନା । ଧୂପ, ହେମଶସ୍ୟ, ପ୍ରେମଶସ୍ୟ, ପୂଜାରିଣୀ, ପୁଷ୍ପିତା, ଅକ୍ଷତ, କମଳାୟନ ଇତ୍ୟାଦି ବହୁ କାବ୍ୟକବିତାର ଅମର ସ୍ରଷ୍ଟା ମାନସିଂହ ।

ଚଳିତ ଶତାବ୍ଦୀରେ ଓଡ଼ିଆ ସାହିତ୍ୟର ସେହି ପ୍ରତିଭା ଗୋଷ୍ଠୀରେ ଆସନ୍ତି କାଳିନ୍ଦିଚରଣ, ଗୋପୀନାଥ, କାହ୍ନୁଚରଣ, ଗଡ଼ନାୟକ, ସଚ୍ଚି ରାଉତରାୟ, ସୁରେନ୍ଦ୍ର ମହାନ୍ତି, ହରେକୃଷ୍ଣ ମହତାବ, ରାଜକିଶୋର ରାୟ ପ୍ରଭୃତି । ଜାତୀୟ ଜୀବନରେ ପ୍ରତିଫଳିତ ବିଭିନ୍ନ ସମସ୍ୟାକୁ ନିଜ ଅନୁଭୂତିରେ ତରଳ କରି ଅନୁଭୂତି ଓ ବାସ୍ତବତାକୁ ମଣିଷଧର୍ମୀ କରି ସ୍ୱକୀୟ ପ୍ରତିଭାରେ ଓଡ଼ିଆ ସାହିତ୍ୟକୁ ରସବନ୍ତ କରି ବିଶ୍ୱ-ଦରବାରରେ ଓଡ଼ିଆ ସାହିତ୍ୟର ଆସ୍ଥାନ ବହୁଭାବରେ ପ୍ରତିଷ୍ଠାକୁ ଏମାନଙ୍କର ଉଦ୍ୟମ ଏବେ ବି ଅପ୍ରତିହତ ।

କିନ୍ତୁ ଏ ଜାତି ଧରମା କୋଣାର୍କର ମୁଣ୍ଡି ମାରିଦେଲା ବୋଲି ତାକୁ ହତ୍ୟା କରିଛି । ମୁକ୍ତିମଣ୍ଡପ ସଭ୍ୟମାନଙ୍କୁ ଉତ୍କୋଚ ଦେଲା ନାହିଁ ବୋଲି କଳାଚାନ୍ଦକୁ କଳାପାହାଡ଼ କରି ହିନ୍ଦୁର ଶତ ଶତ ଦେଉଳ ଭାଙ୍ଗି ଶେଷ କରିବା ପାଇଁ ଉତ୍ସାହିତ କରିଛି । ଶିଖିମନାଇ ନିମକହାରମ ଜାଗିରୀ ପାଇଁ ଫ୍ରେଞ୍ଚର ଚକ୍ରାନ୍ତରେ ବିଶ୍ୱାସଘାତକ ଭୂମିକା ନେଇ ମାତୃଭୂମିର ସ୍ୱାଧୀନତାକୁ ବିପନ୍ନ କରିଛନ୍ତି ।

ସେହି ମାଟି ପାଣିପବନରେ ବୀରପୂଜା, ପ୍ରତିଭାପୂଜା କେବେ ସମ୍ଭବ ହେବ ଜାତିର ଆରାଧ୍ୟ ଦେବ ଜଗନ୍ନାଥଙ୍କୁ ଜଣା, ଗଣତନ୍ତ୍ରର ପ୍ରତିଷ୍ଠା ପାଇବା ପରେ ସାହିତ୍ୟ ସ୍ରଷ୍ଟା ଦଳୀୟ ଭିତ୍ତିରେ ସ୍ୱୀକୃତି ପାଇବାର ପରମ୍ପରା ପ୍ରତିଷ୍ଠା ପାଇଯାଇଛି । ପ୍ରତିଭାର ସ୍ୱୀକୃତ ସ୍ୱୀକୃତି କରୁଥିବା ଦଳୀୟ ମନ୍ତ୍ରୀପରିଷଦ ଓ ସଂଖ୍ୟାଗରିଷ୍ଠ ଶାସକ ଦଳର ମର୍ଜି ଉପରେ ନିର୍ଭର କରି

ଉଠିଛି । ତେଣୁ ଭୟ ହୁଏ । ପ୍ରତିଭପୂଜାର ବ୍ୟତିକ୍ରମ ଘଟିଯିବ କି ? ଏହି ଅବସରରେ ଏକାମ୍ର ଥିଏଟର୍ସ 'ମାନସିଂହଙ୍କର ତିରୋଧାନରେ ମାନସିଂହ ସ୍ମରଣିକା ପ୍ରକାଶ କରିଥିଲା । ଏବେ କବିଚନ୍ଦ୍ରଙ୍କ 'ପରିକ୍ରମା ପ୍ରକାଶ କରି ତାଙ୍କ ଚରଣ ତଳେ ଅର୍ପଣ କରୁଛି ।

ଠିକ୍ ବିଶ୍ୱକର୍ତ୍ତାଙ୍କୁ ତାଙ୍କରି ସୃଷ୍ଟିର ଦୁର୍ବାଦଳ ଅକ୍ଷତ ନେଇ ଯେପରି ଆରାଧନା କରାଯାଏ ।

ଚଳିତ ଶତାବ୍ଦୀର ଏକ ପ୍ରତିଭାସମ୍ପନ୍ନ ନାଟ୍ୟକାର, କବି, ସଙ୍ଗୀତଜ୍ଞ ଓ ଆଧୁନିକ ଓଡ଼ିଆ ରଙ୍ଗମଞ୍ଚର ଜନକ କବିଚନ୍ଦ୍ର କାଳୀଚରଣଙ୍କର ବହୁମୁଖୀ ପ୍ରତିଭାର ଗୁଣ କୀର୍ତ୍ତନ କରିବାରେ ଏହା ସମର୍ଥ ହେବ କି ନାହିଁ ମୁଁ ସନ୍ଦିହାନ ।

କବିଚନ୍ଦ୍ର ପ୍ରାଚୀନ ଓ ଆଧୁନିକ ନାଟ୍ୟ ଓ ସଙ୍ଗୀତ ସାହିତ୍ୟର ମିଳନ ସ୍ଥଳ । ଗଙ୍ଗା, ଯମୁନାର ମିଳନ ସ୍ଥଳ ପରି ଓଡ଼ିଆ ନାଟକ ଓ ରଙ୍ଗମଞ୍ଚର 'ପ୍ରୟାଗ' କାଳୀଚରଣ ।

ସମାଜର ବାସ୍ତବତା, ଅନୁଭୂତି, ପାରିପାର୍ଶ୍ୱିକ ଅବସ୍ଥାକୁ ନେଇ ଦୃଶ୍ୟ କାବ୍ୟ ରଚିଆରେ ସେ ଯେଉଁ ଜନଜାଗୃତି ଓ ସୃଜନ ଶକ୍ତିର ପାଟବ ସୃଷ୍ଟି କରିଛନ୍ତି ତାର ପଟାନ୍ତର ନାହିଁ ।

ଭାତ, ପଟାଭୂଇଁ ଦେଶାତ୍ମବୋଧର ଅମୂଲ୍ୟ ସମ୍ପଦ । ନିର୍ଭୀକତାର ଅପ୍ରତିଦ୍ୱନ୍ଦୀ ଆଲେଖ୍ୟ ।

ଏକାଧାରରେ ନାଟ୍ୟକାର, ନିର୍ଦ୍ଦେଶକ, ଗୀତିକାର, ସଙ୍ଗୀତ ନିର୍ଦ୍ଦେଶକ, ସଙ୍ଗଠକ ଓ ପରିବେଷକ କାଳୀଚରଣ, କେବଳ ଆମ ରାଜ୍ୟରେ ନୁହେଁ, ଆମ ଦେଶର ସେ ଏକ ଏକକ ପ୍ରତିଭା ।

ଓଡ଼ିଶୀ ନୃତ୍ୟ ଓ ଓଡ଼ିଶୀ ସଙ୍ଗୀତର ବିଶ୍ୱଦରବାରରେ ସ୍ୱୀକୃତି ପାଇଁ ତାଙ୍କର ନିରବଚ୍ଛିନ୍ନ ସାଧନାର ପଟାନ୍ତର ନାହିଁ ।

ନିଉୟର୍କରୁ ଟୋକିଓ, ପାରିସରୁ ପେକିଂ, ଲଣ୍ଡନରୁ ମସ୍କୋ ପର୍ଯ୍ୟନ୍ତ ବିଶ୍ୱବ୍ୟାପୀ ଲୋକପ୍ରିୟତା ଆଜି ଯେବେ ଓଡ଼ିଶୀ ସଙ୍ଗୀତ ଓ ନୃତ୍ୟ ଲାଭ କରିଥାଏ ତାହା ହିଁ କବିଚନ୍ଦ୍ରଙ୍କର ଏକ ଚିରସ୍ମରଣୀୟ ଅବଦାନ ।

ଚଳିତ ଶତାବ୍ଦୀର ବହୁ ପ୍ରତିଭାସଂପନ୍ନ କଳାକାର, ସାହିତ୍ୟିକ, ନାଟ୍ୟକାର, ସଙ୍ଗୀତଜ୍ଞଙ୍କ ଭିତରେ ସେ ଏକ ବ୍ୟତିକ୍ରମ । ଓଡ଼ିଆ ରଙ୍ଗମଞ୍ଚ ସଙ୍ଗୀତ, କାବ୍ୟ, କବିତା, ନାଟକ ପ୍ରତ୍ୟେକ କ୍ଷେତ୍ରରେ ସେ ଓଡ଼ିଶାର ଗୌରବମୟ ପରମ୍ପରା ଓ ଆଧୁନିକତା ଭିତରେ ଏକ ସଫଳ ସମନ୍ୱୟ ।

ମାନବିକ ମୂଲ୍ୟବୋଧ ଓ ମହାମାନବିକତାର ପରଶ ଦେବାପାଇଁ ଅବିଶ୍ରାନ୍ତ ଭାବରେ ନିଜର ଲହୁ ଲୁହ, ଆଶା ଆନନ୍ଦରେ ଜାତିର ସାହିତ୍ୟ ସଙ୍ଗୀତର ମହନୀୟ ପରମ୍ପରାକୁ ରକ୍ଷାକରି ସେ ଅମର । କାଳଜୟୀ ।

ଏପରି ବହୁମୁଖୀ ପ୍ରତିଭାର ପୂଜ୍ୟ ପୂଜା ଏ ଜାତି କଣ କରିପାରିଲା ?

ସାଂସ୍କୃତିକ ବିପ୍ଳବ କ୍ଷେତ୍ରରେ କାଳିଦାସଙ୍କ ପାଇଁ ବିକ୍ରମାଦିତ୍ୟଙ୍କୁ ଓ ସେକ୍‌ସପିୟରଙ୍କ ପାଇଁ ରାଣୀ ଏଲିଜାବେଥ୍‌ଙ୍କୁ ସ୍ମରଣ କରୁ ।

ଟେଣ୍ଡର ଯୋଗେ କବି ପ୍ରତିଭା ବା ପ୍ରିୟାପ୍ରୀତି ଓ ଦଳୀୟ ରାଜନୀତିରେ ମାନବିକତା ଯେଉଁଠି ଲୋପ ପାଇ ପାଇ ଯାଉଛି, କବିଚନ୍ଦ୍ରଙ୍କର ବହୁମୁଖୀ ପ୍ରତିଭାର ମୂଲ୍ୟାଙ୍କନ ଏ ଜାତି କରିପାରିବ ତ ?

# କୁମ୍ଭାରଚକ, ଏକ ସମୀକ୍ଷା

ଅଧ୍ୟାପକ ଶ୍ରୀ ଦୁର୍ଗାଚରଣ କୁଅଁର

କବିଚନ୍ଦ୍ର ଡକ୍ଟର କାଳୀଚରଣ ପଟ୍ଟନାୟକ ତାଙ୍କର ଆତ୍ମଜୀବନୀ 'କୁମ୍ଭାର ଚକ' ପାଇଁ ୧୯୭୭ ସାଲର ଜାତୀୟ ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଅଛନ୍ତି । ଓଡ଼ିଶାର କଳାପ୍ରେମୀମାନଙ୍କ ପକ୍ଷରେ ଏହା ଏକ ଆନନ୍ଦର ବିଷୟ । 'କୁମ୍ଭାର ଚକ'ର କେତେକ ଅଂଶ ପ୍ରଥମେ ଓଡ଼ିଶାର କେତେକ ପତ୍ରପତ୍ରିକାରେ ପ୍ରକାଶିତ ହୋଇ ବେଶ୍ ଆଦୃତ ହୋଇଥିଲା । କବିଚନ୍ଦ୍ରଙ୍କ ପ୍ରତିଭା ବହୁତୋମୁଖୀ । ତାଙ୍କ ଜୀବନର ଇତିହାସ ଅର୍ଦ୍ଧଶତାବ୍ଦୀରୁ ଉର୍ଦ୍ଧ୍ୱ କାଳ ଧରି ଓଡ଼ିଶାର ସଙ୍ଗୀତ, ନୃତ୍ୟ ଓ ନାଟ୍ୟକଳାର ଇତିହାସ କହିଲେ ଅତ୍ୟୁକ୍ତି ହେବନାହିଁ । ବହୁ ବାଧାବିଘ୍ନ ଓ ଉତ୍‌ଥାନପତନ ମଧ୍ୟ ଦେଇ ଓଡିଶାର ସାହିତ୍ୟ ଓ ସଂସ୍କୃତିର ବିକାଶ ପାଇଁ ତାଙ୍କର ଜୀବନବ୍ୟାପୀ ଏକନିଷ୍ଠ ସାଧନା ତାଙ୍କୁ ଏ ଜାତି ପ୍ରାଣରେ ଅମର କରି ରଖିବ ।

ସାହିତ୍ୟ ପର୍ଯ୍ୟାୟରେ ଆତ୍ମଜୀବନୀର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି । ଆଗେ ଓଡ଼ିଆ ସାହିତ୍ୟରେ ଆତ୍ମଜୀବନୀ କହିଲେ ବ୍ୟାସକବି ଫକୀର-ମୋହନଙ୍କ ଆତ୍ମଜୀବନୀକୁହିଁ ବୁଝାଉଥିଲା । ଏବେ ଓଡ଼ିଆ ସାହିତ୍ୟର ଏହି

ବିଭଗଟି ରଙ୍ଗିମନ୍ତ ମନେହୁଏ । ଡକ୍ଟର ମହତାବଙ୍କ 'ସାଧନାର ପଥେ', ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶଙ୍କ ଆତ୍ମଜୀବନୀ କାଳନ୍ଦୀ-ଚରଣଙ୍କ 'ଅଙ୍ଗେ ଯାହା ନିଭଇଛି,' ଡକ୍ଟର ମାନସିଂହଙ୍କ 'ଶିକ୍ଷାବିତ୍‌ର ଗାଥା' ଭରତଚନ୍ଦ୍ର ନାୟକଙ୍କ 'ମୋ ପୂର୍ବ ସ୍ମୃତି କଥା' ଏବଂ କବିଚନ୍ଦ୍ର କାଳୀଚରଣଙ୍କ 'କୁମ୍ଭାର ଚକ' ଏ ସଂପର୍କରେ ବିଶେଷଭାବେ ଉଲ୍ଲେଖ-ଯୋଗ୍ୟ । ଏ ସମସ୍ତ ଆତ୍ମଜୀବନୀମୂଳକ ଲେଖାର ତୁଳନାତ୍ମକ ବିଚାର ଏଠାରେ ଲକ୍ଷ୍ୟ ନୁହେଁ; 'କୁମ୍ଭାର ଚକ'ର କେତେକ ବିଶେଷ ଦିଗ ପ୍ରତି ଏକ ବିହଙ୍ଗମ ଦୃଷ୍ଟିପାତ କରଯାଉଛି ମାତ୍ର ।

ସ୍ୱର୍ଗୀୟ ଯଦୁମଣି ମଙ୍ଗରାଜ କବିଚନ୍ଦ୍ରଙ୍କୁ 'ରସରାଜ' ଆଖ୍ୟା ଦେଇଥିଲେ । 'କୁମ୍ଭାର ଚକ' ଏକ ରସଘନ ବର୍ଣ୍ଣାଢ୍ୟ ଜୀବନର ବହୁ ସ୍ମୃତି ବିଜଡ଼ିତି କାହାଣୀ କେବଳ ନୁହେଁ, ଏହା ଲେଖକଙ୍କର ସମସାମୟିକ ସଙ୍ଗୀତ, ନୃତ୍ୟ; ନାଟ୍ୟକଳା ଓ ଜନଜୀବନର ଏକ ମନୋଜ୍ଞ ଆଲେଖ୍ୟ ମଧ୍ୟ ।

'କୁମ୍ଭାର ଚକ'ର ବିଶେଷ ଲକ୍ଷଣୀୟ ହେଲ ଏହାର ଭାଷା ଓ ପରିବେଷଣ ଶୈଳୀ । ଆନ୍ତରିକତାପୂର୍ଣ୍ଣ କଥା କହିବାର ଭଙ୍ଗୀ ପାଠକଙ୍କୁ ସହଜରେ ଆକୃଷ୍ଟ କରିନିଏ । ଲେଖାର ଛତ୍ରେ ଛତ୍ରେ କେତେ ଢଗଢମାଳି, ପହଳିଠାରୁ ଆରମ୍ଭ କରି ଭାଗବତ ବାଣୀ ତଥା ବହୁ ଆପ୍ତବାକ୍ୟ ଭରି ରହିଛି । ଭାଷା ବିନ୍ୟାସରେ ଲେଖକଙ୍କର ସ୍ୱକୀୟତା ସର୍ବତ୍ର ବିଦ୍ୟମାନ । ଅତି ସରଳ କଥିତ ଭାଷା, ଶବ୍ଦାଡ଼ମ୍ବର ନାହିଁ, ଅଥଚ ବର୍ଣ୍ଣନା ବେଶ୍ ରୁଚିକର ଓ ଉଚ୍ଚକୋଟିର । ଗୀରମଗ, ପଛଫେର କଥା ହେଳି ହେଲି, ମନ ହମ ହମ ହେଲ, ଭିଆଣ, ଯୋଗାଡ଼ିବା, ମନ ସୋରେଇଲ, ଫେରି ଅନାଉଁଣୀ, ଭରଜେଇବା, ଆଡ଼ଜୁଆଳିଆ, ଫୁକିଆ ଭଇଁଲ, ଅଟକାର ଦେବା, ଅଗ୍ରହୁଡ଼ା ଦେବା, ଦାଣ୍ଡେଇବା, ବାଟିନି ଦେବା, ଖଲର ପ୍ରଭୃତି ବହୁ ଦେଶଜ ଚଳନ୍ତି ଶବ୍ଦ ଓ ପ୍ରକାଶ ଭଙ୍ଗୀ ତାଙ୍କ ଲେଖାକୁ ସ୍ୱାଭାବିକ କରିଛି । ଜଣେ କମ୍ ପ୍ରତିଭାପନ୍ନ ଲେଖକ ପକ୍ଷରେ ଯେଉଁ ଭାଷାର ବ୍ୟବହାର ହୁଏତ ଗ୍ରାମ୍ୟଦୋଦୁଷ୍ଟ ହେବାର କାରଣ ହୋଇଥାନ୍ତା, କବିଚନ୍ଦ୍ରଙ୍କ ଶକ୍ତିଶାଳୀ ଲେଖନୀରେ ତାହା ରୁଚିମନ୍ତ ଓ ହୃଦ୍ୟ ହୋଇ-ପାରିଛି । ପୁସ୍ତକଟିର ସ୍ଥାନେ ସ୍ଥାନେ କବିଙ୍କର ସ୍ୱରଚିତ ବା ଅନ୍ୟ ରଚନାରୁ ଗୃହୀତ ଗୀତ ବା କବିତାର ପଂକ୍ତିମାନ ଆବଶ୍ୟକ ସ୍ଥଳେ ସଞ୍ଜାଯାଇ ଲେଖାଟିକୁ ଗୀତିମୟ କରିଛି ।

ହାସ୍ୟରସ ପରିବେଷଣ 'କୁମ୍ଭାର ଚକ'ର ଅନ୍ୟ ଏକ ଦିଗ । ନାଟ୍ୟାଚାର୍ଯ୍ୟ ତାଙ୍କ ଜୀବନଚରିତର ସ୍ଥାନେ ସ୍ଥାନେ ହାସ୍ୟରସର ଅବତାରଣା କରିଅଛନ୍ତି ଯାହାକି ଲେଖାଟିକୁ ଅଧିକ ଉପଭୋଗ୍ୟ କରିଛି । ଗୋଟିଏ ଦୁଇଟି ଉଦାହରଣ ଏଠାରେ ଦିଆଯାଇ ପାରେ । ଜଣେ ପଣ୍ଡିତମ୍ମନ୍ୟ ବ୍ୟକ୍ତିଙ୍କର ଉକ୍ତି—"ଡାକ୍ତରବାବୁ ! ମୁଁ ଯାଇଥିଲି ପୁରୀ, ଏସ୍, ଡି (S.D.O.)ଙ୍କ ପାଖରେ ସେଠି କଥନ କଥନ (କଥୋପକଥନ) କରି ଘରକୁ ଆସି ଦେଖେତ ମୋ ଓ୍ୟାଇଫ୍‌ଙ୍କର ଭୀଷଣ ଡିସପେନସରି (ଡ଼ିସେଣ୍ଟ୍ରି), ଆପଣ ଟିକେ ଆସନ୍ତୁ ।" ଭାଷାର ଏ ପ୍ରକାର ତ୍ରୁଟିପୂର୍ଣ୍ଣ ବ୍ୟବହାର ହାସ୍ୟରସର ଉଦ୍ରେକ କରିଥାଏ । ଇଂରେଜୀରେ ଏହାକୁ Malapropism କହନ୍ତି । ଖଣ୍ଡପଡ଼ା ରାଜା (୧୯୧୯ ସାଲ) ଶ୍ରୀରାମଚନ୍ଦ୍ର ଭ୍ରମରବରଙ୍କର କଥା କହିବାରେ ମୁଦ୍ରାଦୋଷ ଥିଲା । ନିଜର ପ୍ରତ୍ୟକ୍ଷ ଅନୁଭୂତିରୁ ଲେଖକ ତା'ର ଉଲ୍ଲେଖ କରି ହାସ୍ୟରସ ସୃଷ୍ଟି କରିଅଛନ୍ତି । 'ତହୁଁ ଶ୍ରୀମୁଖ ଆଜ୍ଞା ହେଲକି'—'ଇୟେ ଏତା ହେଲ ଗଲଉଣ୍ଡାରୁ—ଘଟ ଘର ପୂଅ ଘଟ୍ । ଘଟ ଘର ପୂଅ ଘଟ୍ । ଟୋକା ହେଲେ କ'ଣ ହେଲ ? ଗଲଉଣ୍ଡାରୁ ଯାଇଁଲ ବୁଢ଼ା ଆପଣେ, ସାନ ସାପର ଇୟେ ଏତା ହେଲ ଗଲଉଣ୍ଡାରୁ—ବିଷ କ'ଣ ନଥାଏ କି ?" କବିଚନ୍ଦ୍ରଙ୍କ ହାସ୍ୟରସ ସାଧାରଣତଃ ଉଦାରଧର୍ମୀ । ଫକୀରମୋହନଙ୍କ ହାସ୍ୟରସର ଶାଣିତ ଶ୍ଳେଷ ତାଙ୍କ ଲେଖାରେ କ୍ୱଚିତ୍ ଦେଖିବାକୁ ମିଳେ । ଫକୀରମୋହନଙ୍କ ପରି ବହୁ ରାଜଦରବାରରେ ଚାକିରୀ କରି ସେ ରାଜାମାନଙ୍କ ନିକଟ ସଂପର୍କରେ ଆସିଛନ୍ତି । ସେମାନଙ୍କ ଦୋଷଦୁର୍ବଳତା କାଳୀଚରଣଙ୍କୁ ଅବିଦିତ ନୁହେଁ । କିନ୍ତୁ ତତ୍‌କାଳୀନ ଦଶପଲ୍ଲା ରାଜାଙ୍କର ନିର୍ବୋଧତାକୁ ନେଇ ଫକୀର-ମୋହନ ତାଙ୍କ ଆତ୍ମଜୀବନୀରେ ଯେଉଁ ପ୍ରଚଣ୍ଡ ବ୍ୟଙ୍ଗ ବିଦ୍ରୂପ କରିଅଛନ୍ତି ସ୍ନେହପ୍ରବଣ କାଳୀଚରଣଙ୍କ ପକ୍ଷରେ ତାହା ହୁଏ ତ ସ୍ୱଭାବବିରୁଦ୍ଧ । କିନ୍ତୁ ନିଜ ଆତ୍ମସମ୍ମାନରେ ଯେଉଁଠି ଆଞ୍ଚ ଆସିଛି କାଳୀଚରଣ ଦଂଶନ ନ କରି ଛାଡ଼ିନାହାନ୍ତି । ପୁରୀ ରାଜାଙ୍କ ନିକଟରେ ଚାକିରୀ କରୁଥିବା ବେଳର ଏକ ଘଟଣାରୁ ଏହା ଜଣାପଡ଼େ । ରାଜାଙ୍କ ଅଶାଳୀନ ବ୍ୟବହାରରେ ଉତ୍‌କ୍ଷିପ୍ତ ହୋଇ ସେ ତୀବ୍ର ବିଦ୍ରୂପାତ୍ମକ ଭାଷାରେ ଉତ୍ତର ଦେଇଅଛନ୍ତି ଏବଂ ଚାକିରୀରୁ ଇସ୍ତଫା ଦେଇ ଚାଲି ଆସିଛନ୍ତି । 'ଚାକିରୀ ଝକ୍‌ମାରି' ବ୍ୟଙ୍ଗଗୀତ ଯାହାକି ସେ ରେକର୍ଡରେ ଗାଇଛନ୍ତି, ଏହି ଉପଲକ୍ଷରେ ହିଁ ରଚିତ ।

କବିଚନ୍ଦ୍ର ଗଭୀର ଈଶ୍ୱରବିଶ୍ୱାସୀ, ଦେବୀଭକ୍ତ । ଏହି ଈଶ୍ୱର-ବିଶ୍ୱାସ ଅନ୍ତଃସଳିଳା ଫଲ୍‌ଗୁ ପରି ତାଙ୍କ ଜୀବନ ତଥା ଜୀବନଚରିତରେ ସଦା ପ୍ରବାହମାନ । ତାଙ୍କର ପ୍ରତି ଚିନ୍ତା, ପ୍ରତି କାର୍ଯ୍ୟ ପଛରେ ଏକ ଦୈବୀ

ଇଙ୍ଗିତ ସେ ଅନୁଭବ କରିଛନ୍ତି ଏବଂ ଏହା ତାଙ୍କୁ ଆଗେଇ ଯିବାକୁ ପ୍ରେରଣା ଦେଇଛି । ଏହି ଦୃଢ଼ ଈଶ୍ୱର ବିଶ୍ୱାସ ଜୀବନର ବହୁ ଉତ୍ଥାନ-ପତନ ଓ ସୁଖ ଦୁଃଖ ଭିତରେ ତାଙ୍କୁ ବିଚଳିତ କରିନାହିଁ । ଏ ଧର୍ମ-ବିଶ୍ୱାସ ସଂପୂର୍ଣ୍ଣଭାବେ ତାଙ୍କର ବ୍ୟକ୍ତିଗତ । କୌଣସି ଧର୍ମ ସଂପ୍ରଦାୟ ବା ଗୋଷ୍ଠୀ ସହିତ ସଂପୃକ୍ତ ଥିବାର ସୂଚନା ତାଙ୍କ ଆତ୍ମଚରିତରୁ ମିଳେନାହିଁ । ତାଙ୍କ ଆତ୍ମଜୀବନୀର ନାମକରଣ ମଧ୍ୟ ତାତ୍ପର୍ଯ୍ୟପୂର୍ଣ୍ଣ । 'କୁମ୍ଭାରଚକ' ନାମକୁ ଦୁଇପ୍ରକାର ଅର୍ଥ କରାଯାଇପାରେ । ଏକ ଅର୍ଥରେ ସୃଷ୍ଟିକର୍ତ୍ତା ଈଶ୍ୱର ହେଉଛନ୍ତି କୁମ୍ଭାର । କୁମ୍ଭାର ମାଟି ଚକଟି ତା ଚକରେ ହାଣ୍ଡି ଆଟିକା, ସରା ଇତ୍ୟାଦି ଗଢ଼ିଲା ପରି ଈଶ୍ୱର ନିଜ ରୁଚି ମତେ ସମସ୍ତଙ୍କୁ ଯେ ଯାହା ଅନୁରୂପ ଗଢ଼ିଛନ୍ତି ବା ଗଢ଼ୁଛନ୍ତି । ଏ ଦୃଷ୍ଟିରୁ ପ୍ରତ୍ୟେକଙ୍କ ଜୀବନର ଗତିବିଧି ନିର୍ଦ୍ଦିଷ୍ଟ । ଲେଖକ ନିଜେ ମଧ୍ୟ ଏହି ଐଶୀଶକ୍ତିର ଅଧୀନ । 'କରି କରାଉଥାଏ ମୁହିଁ, ମୋ ବିନୁ ଅନ୍ୟ ଗତି ନାହିଁ ।' ଅନ୍ୟ ଅର୍ଥରେ ଲେଖକ ନିଜେ ମଧ୍ୟ ଏକ କୁମ୍ଭାର । ତାଙ୍କର ହାତରେ ମାଟି ଚକଟି ସେ ବହୁ ସଙ୍ଗୀତଜ୍ଞ, କଳାକାର ଓ କଳା ଦଳ ଗଢ଼ିଛନ୍ତି । ଏହା କବିଚନ୍ଦ୍ରଙ୍କର ଦମ୍ଭୋକ୍ତି ନୁହେଁ । ନିରାଟ ସତ କଥା । ଓଡ଼ିଶାର ପ୍ରତିଷ୍ଠିତ ବହୁ ସଙ୍ଗୀତଜ୍ଞ, ନୃତ୍ୟଶିଳ୍ପୀ, ଅଭିନେତା ଓ ଅଭିନେତ୍ରୀ ତାଙ୍କର ହାତଗଢ଼ା । ସଙ୍ଗୀତ, ନୃତ୍ୟ ଓ ରଙ୍ଗମଞ୍ଚର ଗୁରୁ ହିସାବରେ ନାଟ୍ୟାଚାର୍ଯ୍ୟ କାଳୀଚରଣ ଆଜି ଓଡ଼ିଶାର ସର୍ବମାନ୍ୟ ବ୍ୟକ୍ତି ।

କବିଚନ୍ଦ୍ର ମେଧାବୀ ଛାତ୍ର ଥିଲେ । ସେ କାଳରେ ସେ ପ୍ରଥମ ଶ୍ରେଣୀରେ ମେଟ୍ରିକ୍ ପାଶ୍ କରି କଲେଜରେ ଅଧ୍ୟୟନ କରୁଥିବାବେଳେ, ପିତାଙ୍କର ଅକାଳ ବିୟୋଗ ହେତୁ ବାଧ୍ୟ ହୋଇ କଲେଜ ଛାଡ଼ିଲେ । ବି.ଏ; ଏମ୍.ଏ. ପାସ୍‌କରି ସେ ହୁଏତ ଅନ୍ୟ ପାଞ୍ଚଜଣଙ୍କ ପରି ସେକାଳର ବଡ଼ ରୁକଷି ଡେପୁଟି କି ସବ୍‌ଡେପୁଟି ଟିଏ ହୋଇ ପାରିଥାନ୍ତେ । କିନ୍ତୁ ବିଶ୍ୱନିୟନ୍ତା 'କୁମ୍ଭାର'ଙ୍କର ଉଦ୍ଦେଶ୍ୟ ଥିଲା ଭିନ୍ନ । ତାଙ୍କର ସହଜାତ ପ୍ରତିଭା ତାଙ୍କୁ ତା ନିଜ ବାଟରେ ଆଗେଇ ନେଲା । ଷ୍ଟେଜରେ ସେ ନିଜେ ନାଚିଛନ୍ତି, ଗାଇଛନ୍ତି, ପରଚୁଲ ଓ ବେଶ ପିନ୍ଧି ଫିମେଲ ପାର୍ଟ କରିଛନ୍ତି । ରାସଦଳରୁ ଆରମ୍ଭ କରି ଓଡ଼ିଶାର ସର୍ବପ୍ରଥମ ପେଶାଦାରୀ ନାଟ୍ୟଦଳ 'ଓଡ଼ିଶା ଥିଏଟର୍ସ' ଗଢ଼ିଛନ୍ତି । ରକ୍ଷଣଶୀଳ ଓଡ଼ିଶାରେ ପ୍ରଥମେ ନାରୀ-

ମାନଙ୍କୁ ନେଇ ୧୯୪୨ ସାଲରେ ପ୍ରଥମ ଓଡ଼ିଆ ସାମାଜିକ ନାଟକ 'ଗାର୍ଲସ୍କୁଲ' ମଞ୍ଚସ୍ଥ କରିଛନ୍ତି । ସେ ସମୟରେ କଟକ ତଥା ସାରା ଓଡ଼ିଶାରେ ଏହି ନାଟକ ଏକ ହଲଚଲ ସୃଷ୍ଟି କରିଥିଲା । ଶତାଧିକ ରାତି ଅଭିନୀତ ହୋଇ ଏହି ଜନପ୍ରିୟ ନାଟକ ଓଡ଼ିଶା ରଙ୍ଗମଞ୍ଚର ମୋଡ଼ ବଦଳାଇ ଦେଲା । ଲକ୍ଷ୍ୟ କରିବାର କଥା ସମୟ ଓ ରୁଚିର ପରିବର୍ତ୍ତନ ସହିତ ତାଳ ମିଳାଇ କବିଚନ୍ଦ୍ରଙ୍କର ବହୁମୁଖୀ ପ୍ରତିଭାର ସମବିକାଶ । ନୂତନ ପରୀକ୍ଷା ନିରୀକ୍ଷା କରିବାର ଇଚ୍ଛା ବା ତାଙ୍କ ନିଜ ଭାଷାରେ ନୂଆ କିଛି 'ଭିଆଣ' କରିବାର ପ୍ରବଳ ଆଗ୍ରହ କବିଚନ୍ଦ୍ରଙ୍କ ସୃଜନଶୀଳ ପ୍ରତିଭାର ଏକ ବିଶେଷ ଲକ୍ଷଣ । ପ୍ରତିଭାର ଏହି 'ଅସ୍ଥିରତା' (restlessness) ଯୁଗେ ଯୁଗେ ନୂତନ ଉଦ୍ଭାବନ ଓ ଅଗ୍ରଗତିରେ ସହାୟକ ହୋଇଛି । ଏହି ନୂଆ କିଛି ଭିଆଇବାର ପ୍ରବୃତ୍ତି ହିଁ କାଳୀ-ଚରଣଙ୍କୁ ରାସଲୀଳା ଓ ଦରବାରୀ ନାଟକ ଲେଖାରୁ ପେଶାଦାରୀ ରଙ୍ଗମଞ୍ଚ ଓ ସାମାଜିକ ନାଟକ ଦିଗକୁ ମୁହାଁଇ ନେଇଛି । ଚଳଚ୍ଚିତ୍ର ନିର୍ମାଣ ଓ ଓଡ଼ିଶାରେ ସୁରଲେଖା ରେକର୍ଡ଼ିଂ କଂପାନୀ ପ୍ରତିଷ୍ଠା କରିବାର ପ୍ରଚେଷ୍ଟା ମଧ୍ୟ ତାଙ୍କର ବୌଦ୍ଧିକ କୌତୁହଳ ଓ ଅସ୍ଥିରତାର ଫଳ । ଜୟଦେବଙ୍କ ଗୀତଗୋବିନ୍ଦର ଓଡ଼ିଆ ଅନୁବାଦ କବିଚନ୍ଦ୍ରଙ୍କର ଅନ୍ୟ ଏକ ସଫଳ କୃତି । ଓଡ଼ିଶୀ ସଂଗୀତ ଓ ନୃତ୍ୟକୁ ଶାସ୍ତ୍ରୀୟ ମର୍ଯ୍ୟାଦା ଦେଇ ଭାରତ ଓ ଭାରତ ବାହାରେ ଲୋକପ୍ରିୟ କରିବା ଦିଗରେ ତାଙ୍କର ଜୀବନବ୍ୟାପୀ ସାଧନା କାଳୀଚରଣଙ୍କୁ ଓଡ଼ିଶାର ସାଂସ୍କୃତିକ ଇତିହାସରେ ଅବିସ୍ମରଣୀୟ କରି ରଖିବ ।

ଅନାବିଳ ସ୍ନେହ, ବନ୍ଧୁତା, ସମଧର୍ମୀଙ୍କ ପ୍ରତି ଶ୍ରଦ୍ଧା ଓ ଉଦାର ଭାବ ପୋଷଣ ପ୍ରଭୃତି ମହତ ଗୁଣ ବହୁମୁଖୀ ପ୍ରତିଭାର ଅଧିକାରୀ କାଳୀଚରଣଙ୍କର ବ୍ୟକ୍ତିତ୍ୱକୁ ଆହୁରି ମହିମାମୟ କରିଛି । ତାଙ୍କର ସମସାମ-ୟିକ ସଙ୍ଗୀତ ଓ ନାଟ୍ୟ ଶିଳ୍ପୀ ଏବଂ ସ୍ଥଳବିଶେଷରେ ପ୍ରତିପକ୍ଷ ଗୋବିନ୍ଦଚନ୍ଦ୍ର, ଶୂରଦେଓ, ଅଶ୍ୱିନୀ କୁମାର ଘୋଷ, ମୋହନ ଗୋସ୍ୱାମୀ, ସାଧୁଚରଣ ଦଳବେହେରା ପ୍ରଭୃତିଙ୍କ ପ୍ରତି କାଳୀଚରଣଙ୍କର କୌଣସି ଅସୂୟା ନ ଥିଲା । ଅକୁଣ୍ଠିତ ଚିତ୍ତରେ ସେ ସେମାନଙ୍କୁ ନିଜର ସ୍ନେହ

ଶ୍ରଦ୍ଧା ଜ୍ଞାପନ କରି ଅଛନ୍ତି ଏବଂ ଯାହାର ଯାହା ପ୍ରଶଂସା ପ୍ରାପ୍ୟ ତାହା ଦେବାରେ କୌଣସି ତ୍ରୁଟି କରି ନାହାନ୍ତି । ଓଡ଼ିଶାର ପ୍ରତିଭାବାନ ସଙ୍ଗୀତ ଓ ନାଟ୍ୟଶିଳ୍ପୀ ଗୁରୁଦେଓ ଏବଂ କଳଙ୍ଗା ଆର୍ଟ ଥିଏଟରର ପ୍ରତିଷ୍ଠାତା ବନମାଳୀ ପଣ୍ଡିଙ୍କ ପ୍ରଶଂସାରେ କବିଚନ୍ଦ୍ର ଶତକଣ୍ଠ । ସାହିତ୍ୟିକ ଓ କଳାକାରମାନଙ୍କ ଭିତରେ ଏ ପ୍ରକାର ଉଦାର ମନୋଭାବ କ୍ରମେ ଲୁଣ୍ଠା ହୋଇଯାଉଛି ।

---

# ଲୀଳା ନାଟକର ଶେଷ ଶିଖା

## 'କାଳୀଚରଣ'

ଡକ୍ଟର **ହେମନ୍ତ କୁମାର ଦାସ**

୧୮୭୭ ମସିହାରୁ ଆଧୁନିକ ଓଡ଼ିଆ ନାଟକ ରଚନାର ପ୍ରବୃତ୍ତି ସୃଷ୍ଟି ହୋଇ ସାରିଥିଲେ ମଧ୍ୟ ଲୋକନାଟ୍ୟାନୁରକ୍ତ ସାଧାରଣ ଜନତା ଲୀଳାର ମୋହ ପୂରାପୂରି ତ୍ୟାଗ କରି ପାରିନଥିଲେ । ଅନେକ ସମୟରେ ନାଟ୍ୟ ବିଷୟବସ୍ତୁର ଅଯଥା କ୍ଲିଷ୍ଟତା ( ଉ: ହ: ବନବାଳା ) ବିଷୟବସ୍ତୁ ନିର୍ବାଚନରେ ସ୍ଥାନୀୟ ସମସ୍ୟାର ଅବହେଳା ପ୍ରଭୃତିକୁ ଏହାର କାରଣ ରୂପେ ନିର୍ଦ୍ଦେଶ କରାଯାଇ ପାରେ । ଫଳରେ ଯାତ୍ରା ବା ଲୀଳା ପ୍ରଭୃତି ନାଟ୍ୟାଶ୍ରୟୀ ନହୋଇ ଆଧୁନିକ ନାଟକକୁ ଲୋକନାଟ୍ୟାଶ୍ରୟୀ ହେବାକୁ ପଡ଼ୁଥିଲା । ଲୋକନାଟ୍ୟ ଗୁଡ଼ିକ ସମ୍ପୂର୍ଣ୍ଣ ରୂପେ ବିଲୁପ୍ତ ହୋଇ ପାରୁ ନଥିଲେ । ତେବେ ଆଧୁନିକ ନାଟକ ସୃଷ୍ଟିର କିଛିକାଳ ପରେ ଲୀଳା ନାଟକରେ ନାଟକର ପ୍ରଭାବ ପଡ଼ିଲା । ପାରମ୍ପରିକ ଲୀଳାର ରଚନା ଓ ପରିବେଷଣ ଶୈଳୀରେ ସର୍ବପ୍ରଥମ ପରିବର୍ତ୍ତନ ଆଣିଲେ ଗୋବିନ୍ଦ ଶୂର-ଦେଓ । ଏହାକୁ ମଞ୍ଚୋପଯୋଗୀ କରିବା ନିମନ୍ତେ ସିନ୍‌ସିନେରି ଆଲୋକ ସଜ୍ଜା, ବେଶଭୂଷା ତଥା ଗଦାଧର୍ମୀ ସଂଳାପର ବ୍ୟବହାର କରି ଶୂରଦେଓ ଲୀଳାର ରୂପକୁ କ୍ରମଶଃ ବଦଳାଇବାକୁ ଲାଗିଲେ । ପଦ୍ୟ ଉପରେ ଗଦ୍ୟ ଧୀରେ ଧୀରେ ଆଧିପତ୍ୟ ବିସ୍ତାର କରିବାକୁ ଲାଗିଲା । ଲୀଳାର ଲୋକ-ପ୍ରିୟତା ଆଉ ଜଣେ କଳା ପ୍ରାଣ ବ୍ୟକ୍ତି ନୀରବରେ ଲକ୍ଷ୍ୟ କରୁଥିଲେ । ଆଧୁନିକ ଓଡ଼ିଆ ନାଟକର ଭଗୀରଥ ଏହାଙ୍କର ଏହି ସମୟଟି ହେଉଛି ଆତ୍ମପ୍ରକାଶର ପ୍ରସ୍ତୁତି ପର୍ବ । ଲୀଳା, ସୁଆଙ୍ଗର କାଳ ଯେ ସରି ଆସୁଛି, ଏହା ବୁଝିବା ତାଙ୍କ ଭଳି ଦୂରଦ୍ରଷ୍ଟାଙ୍କ ପକ୍ଷରେ ଅସମ୍ଭବ ନଥିଲା । ମହାକାଳର ପ୍ରଭାବରେ ଲୀଳାର ଘଟି ପରିବର୍ତ୍ତନ ପ୍ରତ୍ୟାଶିତ ହୋଇ ଉଠିଲା । ତଥାପି ଲୀଳା ନାଟକର ଶେଷ ଶିଖାଟି ଲିଭିଯିବା ପୂର୍ବରୁ

ସେଥିରେ କାଳୋପଯୋଗୀ ପରିବର୍ତ୍ତନ ଘଟାଇ ତାକୁ ବଞ୍ଚାଇ ରଖିବାର ଶେଷ ଚେଷ୍ଟା ଯିଏ କରିଥିଲେ ସେ ଆଧୁନିକ ଓଡ଼ିଆ ନାଟକର ସ୍ରଷ୍ଟା ପିତାମହ ଡକ୍ଟର କାଳୀଚରଣ ।

## କାଳୀଚରଣଙ୍କ ମାନସିକତା :

ମାନସିକତା ପାରିବେଶିକ ପ୍ରଭାବର ଦ୍ୱାରା ନିୟନ୍ତ୍ରିତ ହୋଇଥାଏ । ୧୮୯୮ ମସିହାରେ କାଳୀଚରଣଙ୍କର ଜନ୍ମ ସମୟକୁ ଆଧୁନିକ ଓଡ଼ିଆ ନାଟକ ଏକୋଇଶ ବର୍ଷର ଯୁବକ ହୋଇଥିଲେ ହେଁ ପ୍ରାୟ ସ୍ୱାତନ୍ତ୍ର୍ୟ ବିହୀନ ଏବଂ ଅପୁଷ୍ଟ ହୋଇଥିଲା । ଯାତ୍ରା, ଲୀଳା, ସୁଆଙ୍ଗର ବନ୍ଧନରୁ ସେ କାଳର ନାଟ୍ୟକାର ପୂର୍ଣ୍ଣପୂର୍ଣ୍ଣ ମୁକ୍ତିଲାଭ କରିପାରି ନାହାନ୍ତି । ଏହିଭଳି ଏକ ପରିବେଶରେ ଜନ୍ମ ହୋଇ, ଲୋକନାଟ୍ୟର ନିତ୍ୟ ଲୀଳାସ୍ଥଳୀ ପଲ୍ଲୀ ଅଞ୍ଚଳରେ ବାଲ୍ୟକାଳ କଟାଇ ଥିବାରୁ କାଳୀଚରଣ ନାଟ୍ୟକାର ଭାବରେ ପ୍ରସ୍ତୁତି ପର୍ବରେ ଯେ ଲୀଳା, ଯାତ୍ରାପ୍ରତି ଆକୃଷ୍ଟ ହୋଇ ପଡ଼ିବେ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ସାମନ୍ତବାଦର ରକ୍ଷଣଶୀଳତା ମଧ୍ୟରେ ତାଙ୍କର ବାଲ୍ୟକାଳ କଟିଛି । ରାଜତନ୍ତ୍ରର ରକ୍ଷଣଶୀଳତାର ଦୁର୍ଭେଦ୍ୟ ଦୁର୍ଗ ଭେଦି ସେ କାଳରେ ଆଧୁନିକତାର ସାମାନ୍ୟ ପ୍ରକାଶ ତତ୍କାଳୀନ ଗଡ଼ଜାତ ଗୁଡ଼ିକରେ ପ୍ରବେଶ ଲାଭର ଅଧିକାର ପାଇ ପାରି ନଥିଲା । ଘରେ ଜନନୀ ରାଧାମାଳୀ ଦେବୀ ତାଙ୍କର ଛାନ୍ଦ, ଚଉତିଶା, ଚଉପଦୀ, ଜଣାଣର ପୁଞ୍ଜି ନେଇ ଅପରିଣତ ଶିଶୁମନରେ ପ୍ରଭାବ ବିସ୍ତାର କରି ଚାଲିଥିଲେ । ପରିବାରରେ ଥିଲେ ପିତା ଦୁର୍ଗାଚରଣ ଓଡ଼ିଶୀ ସଙ୍ଗୀତର ଏକାନ୍ତ ଭକ୍ତ । ବଡ଼ମ୍ବାଗଡ଼ରେ ସେ ସମୟରେ ଯାତ୍ରା, ଲୀଳା, ସୁଆଙ୍ଗର ବହୁଳ ଚର୍ଚ୍ଚା ଜାରି ରହିଥିଲା । ବଡ଼ମ୍ବା ରାଜା ବିଶ୍ୱମ୍ଭର ମଙ୍ଗରାଜ ମହାପାତ୍ର, ଗୁରୁ କୃପାସିନ୍ଧୁ ପଟ୍ଟନାୟକ ସମସ୍ତେ ଶୁଣିବାକୁ ଚାହୁଁଥିଲେ ଛାନ୍ଦ, ଚଉପଦୀ, ଜଣାଣ ଶିଶୁ କାଳୀଚରଣଙ୍କ କଣ୍ଠରୁ । ଡ଼ୁମ୍ଫା ମଉଜ, ଚଇତିଘୋଡ଼ା, ଦଣ୍ଡନାଟ, ଚଢ଼େୟା ଚଢ଼େୟାଣୀ ନାଟ, ରାମଲୀଳା ଇତ୍ୟାଦି ପ୍ରଭାବ ପୁଷ୍ଟ କାଳୀଚରଣଙ୍କର ହିରୋ ହୁଅନ୍ତି ତେଣୁ ରାମ ଆଉ କୃଷ୍ଣ । ରାମଙ୍କର ଧୀରବୀର ତ୍ୟାଗୀ କ୍ଷମାଶୀଳ ମୂର୍ତ୍ତିଟି ରାମାୟଣରେ ଅଧିକ ସ୍ପଷ୍ଟ ।

ତେଣୁ ଯୁବକ କାଳୀଚରଣ ରାମଙ୍କୁ ଛାଡ଼ି ଲୀଳା-ନାଟକ ନିମନ୍ତେ ମହା-ଭାବମୟ ଶାଶ୍ୱତ ପ୍ରେମିକ କୃଷ୍ଣଙ୍କୁ ହିଁ ନିର୍ବାଚିତ କରିଥିବା ଭଳି ମନେ ହୁଏ । ଦ୍ୱିତୀୟତଃ, ଶ୍ରୀରଦେଓଙ୍କ 'ରାସ' ଯାହାକି ମୁଖ୍ୟତଃ 'କୃଷ୍ଣଲୀଳା' ଆଧାରିତ ଥିଲା, ତାହାର ଲୋକପ୍ରିୟତା ମଧ୍ୟ ରାମଙ୍କୁ ଛାଡ଼ି କୃଷ୍ଣଙ୍କୁ ନାୟକ କରିବା ନିମନ୍ତେ କାଳୀଚରଣଙ୍କୁ ପ୍ରବର୍ତ୍ତାଇ ଥିବ । ମାନସିକତା ଦୃଷ୍ଟିରୁ ଲୀଳା ପକ୍ଷପାତୀ ହେବାର କାରଣ କାଳୀଚରଣ 'କୁମ୍ଭାର ଚକ'ରେ ବିସ୍ତୃତ ଭାବରେ ଆଲୋଚନା କରିଛନ୍ତି । (୧)

## ଲୀଳା ରଚନା :

ଡଃ ପଟ୍ଟନାୟକ ସର୍ବମୋଟ ୧୦।୧୨ ଖଣ୍ଡି ଲୀଳା ରଚନା କରିଛନ୍ତି । ଏ ଗୁଡ଼ିକ ୧୯୨୦।୨୧ ଠାରୁ ଆରମ୍ଭ କରି ୧୯୩୮ ମସିହା

---

(୧) ଏଇ ରାମନବମୀ ଯାତ୍ରାର ଗୀତ, ବାଜା, ନାଚ, ଅଭିନୟ-ମୋ ମନ ଉପରେ ପ୍ରଭାବ ପକାଏ । ସେଇ ଯେ ପ୍ରଭାବ । ତା'ର ଯୋଗୁ ଚାଲିଛି ଆଜି ଅବଧି । ହୋଇ ପାରେ ତା' ଏକ ଅସଂସ୍କୃତ ରୂପ (Crude form) ତଥାପି ତାହାର ଭିତରେ ଥିଲା ଅଛି ଆଉ ଥିବ-ଆମ ସଂସ୍କୃତି-ଆଦିମ ସଂସ୍କୃତି ଓ ଦେଶର ପାଣି ପବନକୁ ମନାଇ ଥିବା ପ୍ରବୃତ୍ତି ( Usage ) ଯାହା ଅନ୍ୟ ଦେଶର ଚାଲିଚଳଣୀଠାରୁ ନିଆରା ବୋଲି ବାରି ହୋଇପଡ଼େ । ସେ ଗୀତକୁ Classical କୁହାଯାଇ ପାରିବ ନାହିଁ; କିନ୍ତୁ ଜନ-ମନୋହାରୀ-ଶାସ୍ତ୍ରୋକ୍ତ । "ଅବଳା ବାଳଗୋପାଳ" ଯାହାକୁ ଗାଇ ଅବା ଶୁଣି ଆନନ୍ଦ ଉପଭୋଗ କରନ୍ତି-ଏ ସେଇଗୀତ-ସଙ୍ଗୀତ । × × ଏହାକୁ ଗଣସଙ୍ଗୀତ, ଲୋକଗୀତ ବା ପଲ୍ଲୀଗୀତ ଯାହା ଇଚ୍ଛା କୁହାଯାଉ × × ଆମ ଓଡ଼ିଶାର ଓଡ଼ିଆଭି ବା ଓଡ଼ିଶୀର ଢଙ୍ଗରଙ୍ଗ ଥିଲା ଏଇ ଗଡ଼ଜାତମାନଙ୍କରେ; ରାଜରାଜୁଡ଼ାଙ୍କ ଘରେ । ନୋହିଲେ କୋଣାର୍କ ଦେଉଳ ଆସନ୍ତା କୋଉଠୁଁ ? ଓଡ଼ିଶୀ ସଙ୍ଗୀତ କଳାର ବିଶେଷତ୍ୱ ବା ସ୍ୱତନ୍ତ୍ରତାର ଜଡ଼ ଖୋଳିବାକୁ ହେଲେ ପଲ୍ଲୀଗୀତକୁ ପହିଲେ ବିଶ୍ଳେଷଣ କରି ଦେଖିବା ଉଚିତ ବୋଲି ମୋର ଧାରଣା × × "ଏଇ ରାମନବମୀ ଯାତ୍ରା ମୋ କଳାକାର ଜୀବନରେ ଛାଇ ପକାଇଛି..." କୁମ୍ଭାର ଚକ : ପୃ : ୧୫/୧୬

ମଧ୍ୟରେ ରଚିତ । ଏ ଗୁଡ଼ିକ ମଧ୍ୟରୁ ମାତ୍ର ୮ ଖଣ୍ଡି ଗ୍ରନ୍ଥାବଳୀରେ ସ୍ଥାନ ପାଇଛି । ଅବଶିଷ୍ଟ, କଳଙ୍କ ଭଞ୍ଜନ, ଦାରିଦ୍ର୍ୟ ଭଞ୍ଜନ, ମିଳନ ମାଧୁରୀ ଏବଂ ଶ୍ରୀ ରାଧା ପ୍ରଭୃତି ୪ ଖଣ୍ଡି ଗ୍ରନ୍ଥର ପାଣ୍ଡୁଲିପି ଦୁଷ୍ପ୍ରାପ୍ୟ । କହିବା ବାହୁଲ୍ୟ ଯେ ଏହି ବାରଖଣ୍ଡିଯାକ ଲୀଳାର ନାୟକ ଶ୍ରୀକୃଷ୍ଣ । ଗ୍ରନ୍ଥାବଳୀରେ ପ୍ରକାଶିତ ୧୯୨୨ରେ ରଚିତ 'ବାଂଶୀ ବିଳାସ'ର ପଦ୍ୟ ବହୁଳତା ୧୯୩୮ ମସିହାରେ ଗଦ୍ୟ ପ୍ରାଧାନ୍ୟ ମଧ୍ୟରେ ଲୀନହୋଇ ଯାଇ-ଥିବାର ତଥା 'ଅମିତାକ୍ଷର ଛନ୍ଦ' ମଧ୍ୟ କ୍ରମଶଃ ଲୀଳାରେ ସ୍ଥାନ ପାଇଥିବାର ଦେଖାଯାଉଛି । କାଳୀଚରଣଙ୍କର ପ୍ରକାଶିତ ଲୀଳାଗୁଡ଼ିକ ହେଲା ବାଂଶୀ ବିଳାସ (୧୯୨୨), କୌତୁକ ଚିନ୍ତାମଣି (୧୯୨୭), ବନବିହାର (୧୯୨୯, ବିଦ୍ୟା ବଳୀ (୧୯୩୨), ଆଖିର ଦେଖା, ଗୀତଗୋବିନ୍ଦ (୧୯୩୬), ପ୍ରୀତି ସୁଧାକର (୧୯୩୭) ଏବଂ ମାନମୟୀ (୧୯୩୮) ।

କାଳୀଚରଣଙ୍କର ଲୀଳା ତତ୍କାଳରେ ଅତ୍ୟନ୍ତ ଲୋକପ୍ରିୟ ହୋଇଥିଲା । ଏହାର ପ୍ରଧାନ କାରଣ ହେଉଛି, ଏ ଗୁଡିକର ପ୍ରଭାବଶାଳୀ ସଙ୍ଗୀତ । ପ୍ରଥମାବସ୍ଥାରେ ଗୋପାଳକୃଷ୍ଣ ଇତ୍ୟାଦି କେତେକ ସାଙ୍ଗୀତିକଙ୍କ ସଙ୍ଗୀତ ଏଥିରେ ବ୍ୟବହୃତ ହେଉଥିଲେ ହେଁ ପରେ ପରେ କବି ସ୍ୱୟଂ ସଙ୍ଗୀତମାନ ରଚନା କରି ନିଜ ଲୀଳାରେ ସେଗୁଡ଼ିକର ପ୍ରୟୋଗ କରିଥିଲେ । ଖାଣ୍ଟି ଓଡ଼ିଶୀ ରାଗ, ରାଗିଣୀର ପ୍ରୟୋଗ, ଗୋଟିଏ ଲୀଳାରେ, ଗୋଟିଏ ସ୍ୱରରେ କେବଳ ଗୋଟିଏ ମାତ୍ର ସଙ୍ଗୀତ ବ୍ୟବହାରର କୌଶଳ ତତ୍କାଳୀନ ଦର୍ଶକ ମାନସରେ ଗଭୀର ପ୍ରଭାବ ପକାଇଥିଲା । ଦ୍ୱିତୀୟତଃ, ପରିବେଷଣରେ ନାଟକୀୟତାର ବ୍ୟବହାର ମଧ୍ୟ ଏହାର ଲୋକପ୍ରିୟତା ବଢ଼ାଇ ଦେଇଥିଲା । ମଞ୍ଚରେ ସିନ୍‌ସିନେରୀ ସାହାଯ୍ୟରେ, ଅଙ୍କ, ଦୃଶ୍ୟର ବିଭାଗୀକରଣ ଦ୍ୱାରା, ଏ ଗୁଡ଼ିକୁ ଯଥାର୍ଥ ଆଧୁନିକ ନାଟକର ସମକକ୍ଷ ରୂପ ଦିଆଯାଇଥିଲା । ତୃତୀୟତଃ, ପରିବେଷିତ ଚରିତ୍ରର ବାସ୍ତବମୁଖୀନତା, ଜନସମାଜ ସହିତ ଏ ଗୁଡ଼ିକର ଯଥାର୍ଥ ଆତ୍ମିକ ସମ୍ପର୍କ, ଏସବୁକୁ ଦର୍ଶକଙ୍କର ମନର, ହୃଦୟର ଅତି ନିକଟର ମନେ ହୋଇଥିଲା । କୃଷ୍ଣ, ରାଧା, ମଧୁମଙ୍ଗଳ, ବିଶାଖା, ଲଳିତା ମଞ୍ଚ ଉପରେ ଏମାନଙ୍କର ଅଲୌକିକତା, ଦେବତ୍ୱ ଦର୍ଶକ ଭୁଲିଯାଉଥିଲା । କୃଷ୍ଣଙ୍କର ପ୍ରେମିକ ସୁଲଭ ଆଚରଣ, ରାଧାଙ୍କର ସାଧାରଣୀ ଅଭିମାନ, ମଧୁ ମଙ୍ଗଳର

ବନ୍ଧୁପ୍ରୀତି, ବିଶାଖା, ଲଳିତା ପ୍ରଭୃତିଙ୍କର ରାଧାପ୍ରାଣତା, ଜଟିଳା, କୁଟିଳାଙ୍କର ଗ୍ରାମ୍ୟ ନାରୀସୁଲଭ ଦମ୍ଭ ଏ ସମସ୍ତ ଦର୍ଶକ ମାନଙ୍କର ନିତି-ଦିନିଆ ଅନୁଭବର କଥା ଥିଲା । ଚତୁର୍ଥତଃ, ବିଷୟବସ୍ତୁ (Plot) ନିର୍ମାଣରେ ନାଟକୀୟତା ରକ୍ଷା କରିବା ନିମନ୍ତେ ଲୀଳାକାରଙ୍କର ଯଥାସାଧ୍ୟ ଚେଷ୍ଟା ଏହାର ଅନ୍ୟ ଏକ କାରଣ । ଆକସ୍ମିକତା, ସନ୍ଦେହ, ଉତ୍କଣ୍ଠା ମନସ୍ତାତ୍ତ୍ୱିକ ବିଶ୍ଳେଷଣ ପ୍ରଭୃତି କଥାବସ୍ତୁ ନିର୍ମାଣର ସମସ୍ତ କୌଶଳକୁ କାଳୀଚରଣ ଲୀଳା ନିମନ୍ତେ ଗ୍ରହଣ କରି ନେଇଥିଲେ । ପଞ୍ଚମତଃ, ତତ୍କାଳୀନ ଦର୍ଶକ ସମାଜର ମାନସିକତା, କୃଷ୍ଣ ଚରିତ୍ରର ମାଧୁର୍ଯ୍ୟ ପ୍ରତି ସେମାନଙ୍କର ଆନୁଗତ୍ୟକୁ ମଧ୍ୟ ଏକ କାରଣ ରୂପେ ଗ୍ରହଣ କରାଯାଇ-ପାରେ । ଷଷ୍ଠରେ ତତ୍କାଳରେ ନିର୍ଦ୍ଦୋଷ ମନୋରଞ୍ଜନ ସାଧନର ଘୋର ଅଭାବ ଥିଲା । ଯାତ୍ରା, ନାମରେ ଯାହା ପରିବେଷଣ କରାଯାଉଥିଲା, ତାହା ଭଦ୍ରୋଚିତ ନ ଥିଲା । ଏ ସମ୍ପର୍କରେ ଦୀର୍ଘ କାଳଧରି ପତ୍ରପତ୍ରିକାରେ ଆଲୋଚନାମାନ ପ୍ରକାଶିତ ହୋଇ ଆସୁଥିଲା । ସେଥିରୁ ତତ୍କାଳୀନ ପରିବେଶଟି ସହଜରେ ଜଣାଯାଇଥାଏ । (୧/୨) ଏ ମଧ୍ୟରେ ଦୀର୍ଘକାଳ

---

(୧) ସମ୍ପ୍ରତି ଓଡ଼ିଶାରେ ଯାହା ଯାତ୍ରା ନାମରେ ଖ୍ୟାତ ହୋଇଅଛି ଓ ଯାହାକୁ ନିରୁପାୟ ହୋଇ ଭଦ୍ରଲୋକମାନେ ପର୍ବବିଶେଷରେ ଦେଖିବାକୁ ବାଧ୍ୟ ହୁଅନ୍ତି, ତାହା ଅତ୍ୟନ୍ତ ଘୃଣିତ ଓ ତଦ୍ଦ୍ୱାରା ଓଡ଼ିଶାର ରୁଚିର କୁତ୍ସିତ ପରିଚୟ ପ୍ରାପ୍ତ ହୁଅଇ । × × ଓଡ଼ିଆଭାଷାରେ କୌଣସି ଯାତ୍ରା ରଚନା କରିବା ଭଳି ବିଦ୍ୟା ଏମାନଙ୍କ ମଧ୍ୟରେ କାହାର ଅଛି କି ନାହିଁ, ତାହା ଆମ୍ଭେମାନେ କହି ନ ପାରୁଁ । ଯେବେ ନ ଥାଏ ତେବେ ସଙ୍ଗୀତ-ପ୍ରିୟ ବିଦ୍ୱାନ୍ ଲୋକଙ୍କ ସାହାଯ୍ୟ ବିନା କାହୁଁ ଏମାନେ ଓଡ଼ିଆ ଯାତ୍ରା କରି ପାରିବେ ?

ଉତ୍କଳ ଦୀପିକା : ୨୦।୧୧। ୧୮୭୫

(୨) ବର୍ତ୍ତମାନ ଓଡ଼ିଶାରେ ଯାହାକୁ ଯାତ୍ରା ବୋଲାଯାଏ, ତାହା ରାମଲୀଳା, କୃଷ୍ଣଲୀଳା, ସୁଭଦ୍ରା ହରଣ ପ୍ରଭୃତି ଅଟଇ । × × ମାତ୍ର ଆମ୍ଭେମାନେ ଯେତେଦୂର ଦେଖିଅଛୁ, କୌଣସି ଯାତ୍ରାରେ ସଙ୍ଗୀତର ବାସନା ସୁଦ୍ଧା ପାଇନାହୁଁ ଏବଂ ଆମ୍ଭମାନଙ୍କ ବିଶ୍ୱାସ ଏହି ଯେ ସଙ୍ଗୀତ କାହାକୁ ବୋଲାଯାଏ ଯାତ୍ରାବାଲାମାନେ ଜାଣନ୍ତି ନାହିଁ । କେବଳ ସଜବେଶ ହୋଇ ଗୁଡ଼ାଏ ପୋଥି ବୋଲନ୍ତି × × ନାନାପ୍ରକାର କଦର୍ଯ୍ୟ ଓ ଭଣ୍ଡ ରୂପ ଦେଖାଇ ଓ ଅଶ୍ଳୀଳ ବାଦ୍ୟ ଉଚ୍ଚାରଣ କରି ଦର୍ଶକମାନଙ୍କୁ ସନ୍ତୁଷ୍ଟ କରନ୍ତି ।

ତଦେବ । ୨୮।୧୦।୧୮୭୬

ଅଭିବାହିତ ହୋଇ ଯାଇଥିଲେ ମଧ୍ୟ ଯାତ୍ରାକ୍ଷେତ୍ରରୁ ଏହି ଦୈନ୍ୟ ଦୂରୀଭୂତ ହୋଇ ନ ଥିଲା । ଚରିତ୍ରର ସଂଯତ ପ୍ରକାଶ, ଶ୍ଳୀଳତା, ଅଶ୍ଳୀଳତା ମଧ୍ୟରେ ନିର୍ଦ୍ଦିଷ୍ଟ ସୀମାରେଖାର ବ୍ୟବହାର, ସଂଳାପର ଯଥାର୍ଥ ସଙ୍ଗୀତର ପ୍ରୟୋଗ 'ନାଟକ' ନିମନ୍ତେ ପ୍ରୟୋଜନ ଥିଲା । ଡଃ ପଟ୍ଟନାୟକ ଲୀଳା-ମାଧ୍ୟମରେ ଏହି ଦୈନ୍ୟଗୁଡ଼ିକ ଦୂର କରିବାର ଉଦ୍ୟମ ଆରମ୍ଭ କରିଦେଲେ । ତେଣୁ ତାଙ୍କର ରଚନା ଗୁଡ଼ିକ ଲୋକପ୍ରିୟ ହେବା ସ୍ୱାଭାବିକ । ସପ୍ତମତଃ ସଙ୍ଗୀତ ଯେତେ ଉଚ୍ଚାଙ୍ଗ ହେଉନା କାହିଁକି, ସେଗୁଡ଼ିକର ପ୍ରୟୋଗ ବାହୁଲ୍ୟ ଅବାସ୍ତବତା ସୃଷ୍ଟି କରି ଦର୍ଶକର ମନକୁ କ୍ଳାନ୍ତିରେ ଭରିଦିଏ । କଳା କ୍ଷେତ୍ରରେ 'ଅତିସୃଷ୍ଟି କର୍ମ' ତେଣୁ ବହୁକ୍ଷଣ-ଧରି ଦର୍ଶକର ମନଯୋଗ ଆକର୍ଷଣ କରିପାରେ ନାହିଁ । ଡଃ ପଟ୍ଟନାୟକ ଚତୁରତାର ସହିତ ସଙ୍ଗୀତକୁ କେବଳ ବର୍ଣ୍ଣନାର ଭୂମିକାଟି ମାତ୍ର ଛାଡ଼ି ଦେଇ ବିଷୟବସ୍ତୁର ଅଗ୍ରଗତିକୁ ସହଜସ୍ୱଚ୍ଛନ୍ଦ ସଂଳାପର ଅଧିକାରକୁ ନେଇ ଆସିଲେ । ବାଣାସୁର, ଦୂତ, ଶ୍ରୀକୃଷ୍ଣ ଇତ୍ୟାଦିଙ୍କ ଆତ୍ମପରିଚୟ ଘୋଷଣା କରୁ କରୁ ମଞ୍ଚରେ ପ୍ରବେଶ କରିବାର ହାସ୍ୟାସ୍ପଦ, ଅବାସ୍ତବ ଦୃଶ୍ୟରୁ ମୁକ୍ତି ଦେଲେ । ଶେଷତଃ, ରସପରିବେଷଣରେ ଅଭିନବତ୍ୱ ଦର୍ଶକକୁ ମୁଗ୍ଧ କରିଥିଲା । ଶୃଙ୍ଗାର ଲୀଳାର ମୁଖ୍ୟରସ ହୋଇଥିଲେ ମଧ୍ୟ ଏଥିରେ ହାସ୍ୟ କରୁଣାଦି ଅନ୍ୟାନ୍ୟ ରସ ମଧ୍ୟ ସ୍ଥାନ ପାଇଛନ୍ତି । ବିଶେଷତଃ, ହାସ୍ୟରସ ପରିବେଷଣରେ ପୂର୍ବର ସ୍ଥୂଳତାକୁ ବାଦ୍ ଦେଇ, କାଳୀଚରଣ ଏଗୁଡ଼ିକୁ ବୁଦ୍ଧିଗ୍ରାହ୍ୟ କରିବା ନିମନ୍ତେ ଉଦ୍ୟମ କରି ଯଥାର୍ଥରେ 'Fresh wind for the souls'ର ବ୍ୟବସ୍ଥା କଲେ ।

ଆଲୋଚନା କଲେ କାଳୀଚରଣଙ୍କର ଲୀଳାର ଲୋକପ୍ରିୟତାର ଏଇଭଳି ଅନେକ କାରଣ ବାହାରିବ । ସଙ୍ଗୀତ ଏଗୁଡ଼ିକର ପ୍ରାଣ ଥିଲା । ପରିମିତ, ସୁଶ୍ରାବ୍ୟ, ପରିବେଶୋପଯୋଗୀ, ଭାବମୁଖୀ ସଙ୍ଗୀତର ପ୍ରୟୋଗ କରି ଲୀଳାକାର ଲୀଳାର ରୂପ ବଦଳାଇ ଦେଲେ । ଡଃ ପଟ୍ଟନାୟକ ଶୂରଦେଓ ପ୍ରତିଭାର ଜଣେ ମୁଗ୍ଧ ଭାବକ । ତାଙ୍କର ଲୀଳା ପ୍ରବୃତ୍ତିଟି ଯେ ଶୂରଦେଓ-ପ୍ରେରିତ ଏଥିରେ ସନ୍ଦେହ ନାହିଁ । ଶୂରଦେଓ ଲୀଳାର ପାରମ୍ପରିକତାକୁ ପ୍ରଥମେ ଭାଙ୍ଗିଦେଇ ଥିଲେ । ଡଃ କାଳୀଚରଣ ଶୂରଦେଓ ପ୍ରଦର୍ଶିତ ପଥକୁ ଆହୁରି ପ୍ରଶସ୍ତ, ଅଧିକ ସୁଗମ ଏବଂ

ସୁଖାବହ କରିପାରିଥିଲେ । ଶ୍ରୀରଦେଓ ସଙ୍ଗୀତରେ ମୋହରେ ସେତେ ପରିମାଣରେ ସଙ୍ଗୀତ ନିଜ ଲୀଳାରେ ବ୍ୟବହାର କରୁଥିଲେ, ଡଃ ପଟ୍ଟନାୟକ ସେଥିରେ ଯେଉଁ ବାର୍ତ୍ତାଳାପର ମାତ୍ରା ଧୀରେ ଧୀରେ ବଢ଼ାଇବାକୁ ଲାଗିଲେ । ଗଦ୍ୟ ସଂଳାପ ଶେଷରେ ଅମିତ୍ରାକ୍ଷରରେ ନୂତନ ରୂପ ପରିଗ୍ରହ କଲା । ପଦ୍ୟ ଉପରେ ଗଦ୍ୟର ଯଥାର୍ଥ ବିଜୟ ଘୋଷିତ ହେଲା ।

## ଲୀଳା କ୍ଷେତ୍ରରୁ ବିଦାୟ

୧୯୩୮ ମସିହା ବେଳକୁ ଡଃ ପଟ୍ଟନାୟକ ମନ ସ୍ଥିର କରି ସାରିଥିଲେ । ପ୍ରସ୍ତୁତିପର୍ବ ଶେଷ ହୋଇଗଲା । ଆତ୍ମାଭିବ୍ୟକ୍ତିର ଜଟିଳ ଯନ୍ତ୍ରଣାରୁ ମୁକ୍ତି ପାଇବା ନିମନ୍ତେ ରାଧା, କୃଷ୍ଣ, ଲଳିତା, ବିଶାଖା ଯେ ଯଥାର୍ଥ ମାଧ୍ୟମ ନୁହନ୍ତି, ଏହି ସତ୍ୟ ହୃଦୟଙ୍ଗମ କରି ଶ୍ରୀ ପଟ୍ଟନାୟକ ଯୁଗଯନ୍ତ୍ରଣାରେ ନିଷ୍ପୀଡ଼ିତ ମଦନ, ବସନ୍ତ, ଜମ୍ବୁ, ବିଜୟା, ରମା, ଜମିଦାର, ଗୁମାସ୍ତାଙ୍କ ଗହଣକୁ ଗୁଳିଗଲେ । ପ୍ରତିଭାର ଗତି ପରିବର୍ତ୍ତିତ ହେଲା । ଲୀଳାକ୍ଷେତ୍ରରୁ ତାଙ୍କର ବିଦାୟ ସହିତ ଲୀଳାର ଶେଷ ଅମଳିନ ଦୀପଶିଖାଟି ମଧ୍ୟ ନିର୍ବାପିତ ହୋଇଗଲା ।

---

# ଗୋଟିଏ ଦିନର ଅନୁଭୂତି

**ବୈକୁଣ୍ଠ ନାଥ ଆଚାର୍ଯ୍ୟ**

ପାଖ ୩୫ ବର୍ଷ ତଳର ଏକ ବର୍ଷଣମୁଖର ସନ୍ଧ୍ୟା । ଦୁଇ ତିନିଟି ଘୋଡ଼ାଗାଡ଼ିରେ ଆମେ ଆସି ଥାଉ ରେଭେନ୍‌ସା କଲେଜ ପୂର୍ବ ଛାତ୍ରାବାସର କେତେକ ସ୍ନାତକ ଶ୍ରେଣୀର ଛାତ୍ର । ବାଙ୍କାବଜାର ଓଡ଼ିଶା ଥିଏଟରସ୍‌ରେ ଚାଲିଥାଏ, ସାମାଜିକ ନାଟକ 'ଭାତ' ।

'ଭାତ' ସେତେବେଳକୁ ମାସାଧିକ କାଳଧରି ଚାଲିଲାଣି, କଲେଜ ଛାତ୍ରାବାସରେ ତା'ଉପରେ ଆଲୋଚନା ସମାଲୋଚନା ବହୁତ । ତାର ଅନ୍ତତଃ ଦୁଇ ମାସ ପୂର୍ବରୁ ଛାୟାଚିତ୍ର 'ରୋଟି' ଆମେ ସମସ୍ତେ ଦେଖି ଥାଉଁ । ତେଣୁ 'ରୋଟି' ଦେଖି ଫେରିଥିବା ବନ୍ଧୁମାନଙ୍କ ମଧ୍ୟରୁ କେତେକ ସମାଲୋଚନା କରୁଥାନ୍ତି—'ଭାତ'ଟା କେବଳ 'କଙ୍ଗ'ନର ଓଡ଼ିଆ ରୂପ ।

ସେଦିନ ମୋର କେତେକ ସମ୍ବଲପୁରୀ ବନ୍ଧୁ 'ଭାତ' ତ 'ଭାତ',—ତା ପୂର୍ବରୁ ତା ପ୍ରେକ୍ଷାଳୟର ରୂପଶ୍ରୀ ଦେଖି ମୁହଁ ଆମ୍ଭି ଦେଇ ଦେଲେ । ଅଧା ନେପଟେଇ ପଡ଼ିଥିବା ଝଣ୍ଟେ ଚାଳିଆ ଘର, ବର୍ଷାଦିନେ ଭିତରେ ସନ୍ତସନ୍ତିଆ ତଳ, ସେଇ ତଳ ଉପରେ କେତେ ଖଣ୍ଡେ ଭଙ୍ଗା ଦଦରା ବେଞ୍ଚ ଆଉ ଚଉକି । ନାଁ ଆଲୋକ ସଜ୍ଜା ଅଛି, ନାଁ ଘରର କିଛି ଆଡ଼ମ୍ବର ଅଛି । ଏ ପୁଣି ଗୋଟେ ପ୍ରେକ୍ଷାଳୟ ଏବଂ ରାଜଧାନୀ କଟକ ସହରର ଏକମାତ୍ର ରଙ୍ଗମଞ୍ଚ !!

ନାଟକ ଆରମ୍ଭ ହେଲା । ଆମ ପାଖରେ ବସି ଥାଆନ୍ତି ସ୍ୱର୍ଗତ ଯଦୁମଣି ମଙ୍ଗରାଜ—ବଚନ ରଚନା ଚତୁର, ଯଦୁମଣି—ହାସ୍ୟ ରସିକ ଯଦୁମଣି—ବୃଦ୍ଧ, ବାଳକ, ଯୁବକ ସବୁରି ପ୍ରିୟ ଯଦୁମଣି !

ଦୃଶ୍ୟ ପରେ ଦୃଶ୍ୟ ଚାଲିଛି, ସବୁଟି ଦୃଶ୍ୟ ଉପଭୋଗ୍ୟ—ସବୁଟି ସରସ ଆଉ ଜୀବନ୍ତ । ମନକୁ ଛୁଇଁଲା ଭଳି ସଂଳାପ ଏବଂ ପ୍ରାଣକୁ ଛୁଇଁଲା ଭଳି ସଙ୍ଗୀତ, ବାହାରର ବର୍ଷଣ ମେଘ ସହିତ ତାଳ ଦେଇ ମଞ୍ଚ ଉପରେ ଅସରା ଅସରା ବର୍ଷି ଯାଉଥାଏ । ସ୍ୱର୍ଗତଃ ମଙ୍ଗରାଜ ଆପଣେ ମଝିରେ ମଝିରେ ମଜ୍ଜା ଟିପ୍ପଣୀ ଦେଇ ଆମ ଭିତରେ କଲ୍ଲୋଳ ସୃଷ୍ଟି କରୁଥାଆନ୍ତି ।

ନାଟକ ଶେଷରେ ମଞ୍ଚ ଉପରେ ଦେଖା ଦେଲେ ସ୍ୱୟଂ ନାଟ୍ୟକାର କାଳୀଚରଣ । ଦର୍ଶକମାନଙ୍କୁ ସମ୍ବୋଧନ କରି ଯେତିକ କହିଲେ ତାର ମୋଟ କଥା ହେଉଛି, "ଦେଖନ୍ତୁ, ହେ ମୋର ପ୍ରିୟ ଦର୍ଶକ ମଣ୍ଡଳୀ ! 'ଅନ୍ନପୂର୍ଣ୍ଣା ଥିଏଟର' ଏବେ କଟକ ଆସୁଛି । ଆପଣ-ମାନେ, ଯେଉଁମାନେ ନାଟକ ପ୍ରେମୀ ଅନ୍ତତଃ ଯେଉଁମାନେ ଓଡ଼ିଶାରେ ଆଧୁନିକ ନାଟକର ପ୍ରଚାର ପ୍ରସାର ଚାହାଁନ୍ତି, ସେମାନେ ଯେପରି 'ଓଡ଼ିଶା ଥିଏଟରସ'କୁ ଭୁଲି ନ ଯାଆନ୍ତି ।"

କବିଚନ୍ଦ୍ରଙ୍କର ସେ ଦିନର ଆଶଙ୍କା ଥିଲା, 'ଅନ୍ନପୂର୍ଣ୍ଣା ଥିଏଟରସ୍'ର ଆଡ଼ମ୍ବର ଓ ଚାକଚକ୍ୟରେ ତାଙ୍କର ସେଇ ଭଙ୍ଗା ଚାଳିଆ ପ୍ରେକ୍ଷାଳୟକୁ ଦର୍ଶକମାନେ ଉପେକ୍ଷା କରି ବସିବେ ।

'ଅନ୍ନପୂର୍ଣ୍ଣା' ଆସିଲା । କିନ୍ତୁ କାହିଁ ! କବିଚନ୍ଦ୍ରଙ୍କ ଆଶଙ୍କା ତ ଟିକିଏ ସତ ହେଲା ନାହିଁ । ନାଟକ ପରେ ନାଟକ ମଞ୍ଚସ୍ଥ ହୋଇ ଚାଲିଲା । ଓଡ଼ିଶା ଥିଏଟର୍‌ସ'ର ସେହି ଭଙ୍ଗା ଦଦରା ଘର ଖଣ୍ଡିକ ସବୁଦିନ ରହିଲା ଦର୍ଶକରେ ଭରପୂର । କେବଳ ରଚନାର ସ୍ୱାଦ ହିଁ ସମସ୍ତଙ୍କୁ ସେଠିକି ଟାଣି ନେଲା ।

ସେ ଦିନର ନାଟକ ପରେ ଆମେ ଆସି ବାହାରେ ଭେଟିଲୁ କବିଚନ୍ଦ୍ରଙ୍କୁ, 'କଣ୍ଟ୍ରାକ୍ଟ'ର ଛାୟା 'ଭାତ' ଉପରେ କିପରି ପଡ଼ୁଛି, ତାହାହିଁ ତାଙ୍କୁ କହି ବସିଲୁ । କବିଚନ୍ଦ୍ର ସେଦିନ କହିଥିଲେ—"ଏଇ ଚନ୍ଦ୍ରଟା ଯୁଗ ଯୁଗର । ଯୁଗ ଯୁଗ ଧରି ଲୋକେ ନାରୀର ସୁନ୍ଦର ବର୍ତ୍ତୁଳ ମୁହଁଟିଏ ଦେଖିଲେ ତାକୁ ଚନ୍ଦ୍ର ମୁହାଁ ବୋଲି କହି ଆସୁଛନ୍ତି । ଏ କାଳର ସୁନ୍ଦର

ସେଲ୍‌ଡ଼ ଗୋଲ୍‌ଡ଼ ଘଣ୍ଟାର ଗୋଲକାର ରୂପ ଦେଖି କୌଣସି ନାରୀକୁ ତ କେହି ଘଣ୍ଟା ମୁହାଁ ବୋଲି କହନ୍ତି ନାହିଁ । ଭାବର ପ୍ରତିଫଳନକୁ କୌଣସି ସାହିତ୍ୟ ଅସ୍ୱୀକାର କରିପାରିବ ନାହିଁ । ତା ହୋଇଥିଲେ ରାଧାନାଥଙ୍କ 'ଉଷା' ତ ଓଡ଼ିଆ ସାହିତ୍ୟରୁ ବହୁକାଳ ହେଲା ଲୁଚି ଯାଆନ୍ତାଣି ।" ଏତିକ ବେଳେ ଯଦୁମଣି ବାବୁ ଟିପ୍‌ପଣୀ ଦେଇଥିଲେ," ଅରେ ମାଟି ତ ମାଟି, ସେଥିରୁ ଗାଁ କୁମ୍ଭାର ହାଣ୍ଡି ଗଢ଼େ—କହିକ ତଳି, ସହରିଆ କୁମ୍ଭାର ସୁରେଇ ଗଢ଼େ—କହିକର ସହରୀ କୁମ୍ଭାର ମହାଦେବ ବନାଏ । ହାଣ୍ଡି, ସୁରେଇ ଆଉ ମହାଦେବ କ'ଣ ଏକା ମୂଲ୍ୟ ? ଏକା କଥା ବସ୍ତୁ, ଏକା ଭାବ ସାହିତ୍ୟରେ ସେମିତି ସହସ୍ର ରୂପ ନେଇ ପାରେ । ତେଣୁ ଏ 'ଭାତ' ଆମ କାଳୀବାବୁଙ୍କ ସୃଜନୀର ସେମିତି ଗୋଟିଏ କୋଠି !

ଆଜ ସେଇ ବରିଷ୍ଠ କୁମ୍ଭାର ଆଉ ତା' କୁମ୍ଭାର ଚକ କଥା ମନେ ପଡ଼େ । ସେଇ ଚକରୁ ଗଢ଼ି ଉଠିଛି ଭାତ, ଗାର୍ଲ୍‌ସ୍କୁଲ, ଚକ୍ରୀ, ଅଭିଯାନ, ଜୟଦେବ, ଫଟାଭୂଇଁ ଆଦି ଅସଂଖ୍ୟ ନାଟକ । ରୂପରେ କିଏ ବା ମହାଦେବ, କିଏ ବା କାଳୀ, କିଏ ବା କାର୍ତ୍ତିକ—ସମସ୍ତେ କିନ୍ତୁ ଗୋଟିଏ କୁମ୍ଭାର ହାତର ଗୋଟିଏ ଚକରେ ଗଢ଼ା । ସେ ଚକ ଏବେ ବି ଘୂରୁଛି ଏବଂ ସେଥିରୁ ଗଢ଼ି ଉଠୁଚି କେତେ ଯେ କଥା, କେତେ ଯେ ସଙ୍ଗୀତ କେତେ ଯେ ଆଲୋଚନା-ସମାଲୋଚନା ତା'ର କଳଣା ନାହିଁ ।

ସେ ସୃଷ୍ଟିର ବିରାମ ନାହିଁ କି ସେ କୃଷ୍ଟିରେ କାଳିମା ନାହିଁ । ଭାରତୀୟ ସାହିତ୍ୟ ଏକାଡେମୀ ଏଭଳି ଏକ ଅବିରତ ସୃଜନଶୀଳ 'କୁମ୍ଭାର ଚକ'କୁ ପୁରସ୍କୃତ କରି ନିଜେ କୃତମନ୍ୟ ହୋଇଛନ୍ତି ମାତ୍ର !!

—o—

# ସିଦ୍ଧ-ସାଧକ
# କବିଚନ୍ଦ୍ର କାଳୀଚରଣ

**ଶ୍ରୀ ପରମାନନ୍ଦ ଅଧିକାରୀ**

ଆଧୁନିକ ଓଡ଼ିଆ ସାହିତ୍ୟର ବାଣୀଭଣ୍ଡାରକୁ ଯେଉଁ ବାଣୀବର-ପୁତ୍ରମାନେ ସମୃଦ୍ଧକରି, ନିଜର ଅମର କୃତୀର ଅକ୍ଷୟ କୀର୍ତ୍ତିରେ ଆୟୁଷ୍ମାନ ହୋଇଛନ୍ତି, ସେମାନଙ୍କ ମଧ୍ୟରେ ସିଦ୍ଧ ସାଧକ, କବିଚନ୍ଦ୍ର ଡକ୍ଟର କାଳୀଚରଣ ପଟ୍ଟନାୟକ ମହୋଦୟ ହେଉଛନ୍ତି ଅନ୍ୟତମ । କାଳୀବାବୁଙ୍କ ଜୀବନର ସଂଘର୍ଷମୟ ଇତିହାସ ହିଁ ଜାତୀୟ ଜୀବନର ଅର୍ଦ୍ଧ ଶତାବ୍ଦୀର ଇତିହାସ । ସେ କେବଳ ନାଟ୍ୟ ସାହିତ୍ୟରେ ବରେଣ୍ୟ ଯୁଗସ୍ରଷ୍ଟା ନୁହନ୍ତି । ବିଶିଷ୍ଟ ନୃତ୍ୟଗୁରୁ, ସ୍ୱନାମଧନ୍ୟ ସଙ୍ଗୀତଜ୍ଞ, ପ୍ରବୀଣ ଅନୁବାଦକ, କୃତବିଦ୍ୟ ଗୀତିକାର ଏବଂ ସୁଯୋଗ୍ୟ ସମ୍ପାଦକ ଭାବରେ ସୁପ୍ରସିଦ୍ଧ ଏବଂ ଏକ ସ୍ୱତନ୍ତ୍ର ଆସନର ଅଧିକାରୀ । ଓଡ଼ିଶୀ ନୃତ୍ୟକୁ ସର୍ବ-ଭାରତୀୟ ସ୍ୱୀକୃତି ପ୍ରଦାନ କରାଇବାରେ ସେ ହେଉଛନ୍ତି ସର୍ବଶ୍ରେଷ୍ଠ ଉଦ୍‌ଯୋଗୀ । ଓଡ଼ିଶୀ ସଂଗୀତକୁ ନବ ରୂପାୟନ କରାଇବାରେ ସେ ପୁଣି ହେଉଛନ୍ତି ଅଗ୍ରଣୀ । ଏକାଧାରରେ ସେ ଜଣେ ଅସାମାନ୍ୟ ଅଭିନେତା, ଗାୟକ, ଚଳଚ୍ଚିତ୍ର ନିର୍ଦ୍ଦେଶକ ଓ ମହାନ ଜଗନ୍ନାଥ ସଂସ୍କୃତିର ପୃଷ୍ଠପୋଷକ । ଓଡ଼ିଶୀ ସଂଗୀତକୁ ନାଟକରେ ସଂଯୋଗ କରିବାରେ, ଅଭିନେତ୍ରୀ ମାନଙ୍କୁ ନେଇ ନାଟକ ମଞ୍ଚସ୍ଥ କରାଇବାରେ, ଏଚ୍. ଏମ୍. ଭି. ରେକର୍ଡ କଂପାନୀରେ ଓଡ଼ିଆ କମିକ ଗୀତ ଓ ଅନ୍ୟ ଗୀତ ଗାଇବାରେ, ସଂଗୀତ ପତ୍ରିକା ପ୍ରକାଶ କରିବାରେ, ଓଡ଼ିଶାରେ ସୁର ଲେଖା ନାମକ ରେକର୍ଡ କଂପାନୀ ପ୍ରତିଷ୍ଠା କରିବାରେ ଓ କଲିକତା ରେଡ଼ିଓ ଷ୍ଟେସନରେ ଓଡ଼ିଆ କଂଠ ଶିଳ୍ପୀ ଭାବରେ ଯୋଗ ଦେଇ ସଂଗୀତ ପରିବେଷଣ କରିବାରେ ସେ ବୋଧହୁଏ ପ୍ରଥମ ।

ସୁଜଳା-ସୁଫଳା-ଶସ୍ୟ ଶ୍ୟାମଳା, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଉତ୍କଳ ଜନନୀ ତାଙ୍କ ଭଳି ଜଣେ ପ୍ରଜ୍ଞାବନ୍ତ, କୃତିମନ୍ତ ଓ କୀର୍ତ୍ତିଷ୍ମାନ୍ ସୁପୁତ୍ରଙ୍କୁ ଗର୍ଭରେ ଧରି ଧନ୍ୟା । ତାଙ୍କର ଅନନ୍ୟ ସାଧାରଣ ପ୍ରତିଭା ବହୁଭାବରେ ବିଭାବିତ ହୋଇଛି । ନିରବଚ୍ଛିନ୍ନ ନୈଷ୍ଠିକ ସାଧନା, ସବ୍ୟସାଚୀୟ ଦୃଢ଼ ସଙ୍କଳ୍ପ, ଅଖଣ୍ଡ ଏକାଗ୍ରତା ଓ ଅଧ୍ୟବସାୟ ଆଜି ତାଙ୍କୁ ଜୟମାଲ୍ୟ ପିନ୍ଧାଇ କୋଟି ଜନ ଗଣ ମନରେ ଅଧିକାର କରିଛି । ଦିବ୍ୟ ଜୀବନର ଦିବ୍ୟାନୁଭୂତିର ପୁଣ୍ୟସ୍ପର୍ଶ ତାଙ୍କୁ କେବଳ ସବୁବେଳେ ପରମାତ୍ମାଙ୍କ ମହାନ୍ ସତ୍ତା ସଂପର୍କରେ ସଚେତନ କରାଇନାହିଁ ଅସୂୟା, ଅହଂ, ଆଭିଜାତ୍ୟର ବଡ଼ିମା ଛଡ଼ାଇ ନିର୍ବାଣଦାୟୀ ଭକ୍ତି-ପ୍ରେମସୁଧା ଆସ୍ୱାଦନ କରାଇବାରେ ପ୍ରବୃତ୍ତ କରାଇଛି ।

ଭକ୍ତ ସବୁବେଳେ ଭଗବାନଙ୍କଠାରୁ ବଡ଼ । ଶରଣାଗତରେ ମାନସ ବଳାଇ ତେଣୁ ସେହି ଧନ-ଜନ-ଶରଣ-ରକ୍ଷଣ ମହାବାହୁଙ୍କୁ ଭକ୍ତ କବିଚନ୍ଦ୍ର କହିଛନ୍ତି :—

"ବଡ ଦେଉଳେ ବଡ଼ ଦିଅଁ କାହିଁକି ?
ବଡ ବୋଲାଇ ଲାଜ ନାହିଁ କି ?

ବଡ ଦିଅ ବଡ ଦିଅଁ ପଡ଼ିଛୁ ଦୂର (ହରି ହେ)
ବଡତ କରିଛ କହ କାହିଁ କାହାର ?

ଧରମ ପାପ ଯାହା — ଫଳ ଭୋଗିଲି ତାହା
ଆହା ପଦକୁ ଯାହା — ନାହିଁ କେ ଚଉବାହା
ମୋ' କରମ ବଳ — ନାହିଁତ ତୁମବଳ
କି ହେବ ହେ ପ୍ରଭୁ ପଣ ଥାଇକି ?"

ଜନ୍ମ ସିଦ୍ଧ ଓ ସ୍ୱଭାବ ସିଦ୍ଧ କବି ଭାବରେ ତାଙ୍କ—ସରଳ ହୃଦୟରେ ଜୀବନର ପ୍ରତ୍ୟୁଷରେ ତରଳ ଭାବରେ ପ୍ରେମ ଭକ୍ତିସୁଧା ରସର ଉଦ୍ରେକ ହୋଇଥିଲା । ତେଣୁ ସେ ଆଦ୍ୟାଶକ୍ତିଙ୍କ ଚରଣାମ୍ବୁଜରେ ଭକ୍ତି ନୈବେଦ୍ୟ ନିବେଦି ଗାଇଥିଲେ—

"ଦେଖା ଗୋ ପରମାନନ୍ଦ ଦାୟିନୀ
ପଦ୍ମଗନ୍ଧ ପ୍ରସୂନ ମାଳିନୀ
ମା' ଶ୍ମଶାନ ବିଳାସିନୀ
କର ଦୟା ଘେନେ ସିଂହ ବାହିନୀ
ହର ହୃଦୟ ପରିଶ୍ରମଣୀ ।"

ତୁଳସୀ ଦୁଇପଦରୁ ବାରିଲ ଭଳି ବାଲ୍ୟକାଳରୁ କାଳୀବାବୁଙ୍କର ପ୍ରତିଭାର ପରିଚୟ ମିଳିଥିଲା । ସେ ସନ ୧୮୯୮ ମସିହା ଡିସେମ୍ବର ମାସ ତା ୨୩ ଖିଖ ଦିନ କଟକ ଜିଲ୍ଲାର ବଡମ୍ବା ଗଡ଼ରେ ଜନ୍ମ ହୋଇଥିଲେ । ତାଙ୍କର ପିତାଙ୍କ ନାମ ଦୁର୍ଗାଚରଣ ପଟ୍ଟନାୟକ । ମାତାଙ୍କ ନାମ ରାଧା ଦେଈ । କୋଟିଏ ଭିତରେ ଗୋଟିଏ ହୋଇ ଗଣାହେବା ପାଇଁ ପ୍ରାକୃତିକ ପରିବେଶ ତାଙ୍କୁ ସୁଯୋଗ ଯୋଗାଇଥିଲା ।

କବିଚନ୍ଦ୍ର କାଳୀଚରଣଙ୍କର ଜାତୀୟତାଭାବ ଅଧିକ । ସେ ଜଣେ ଖାଣ୍ଟି ଓଡ଼ିଆ । ଜରା ବ୍ୟାଘ୍ରର ଭୀମ-ଭୟଙ୍କର ଗର୍ଜନକୁ ଭ୍ରୂକ୍ଷେପ ନ କରି ଏବେ ବି ସେ ମଧ୍ୟ କର୍ମଠ, କର୍ମ ଚଞ୍ଚଳ । କର୍ମ ହିଁ ତାଙ୍କର ଭଗବାନ । ସେ ଓଡ଼ିଶା ତଥା ଓଡ଼ିଶା ବାହାରେ—ବହୁ ସାଂସ୍କୃତିକ ଓ ସାହିତ୍ୟିକ ଅନୁଷ୍ଠାନ ସହିତ ସଂପୃକ୍ତ । 'କଳାବିନୋଦ'ର ବରେଣ୍ୟ ସଭାପତି ।

ସେ ସୌଜନ୍ୟ ସ୍ନିଗ୍ଧତାର କେବଳ ଜୀବନ୍ତ ପ୍ରତିମୂର୍ତ୍ତି ନୁହନ୍ତି, ଜଣେ ମାନବବାଦୀ ମଣିଷ ଓ ବିଦଗ୍ଧ ରସିକ । ତାଙ୍କର ପ୍ରତି କଥାରୁ ରସିକତାର ରସ ଆସ୍ୱାଦନ କରି ହୁଏ । ପାଣ୍ଡିତ୍ୟର ନିର୍ଯ୍ୟାସ ବାରି ହୁଏ । ତାଙ୍କର ଗୋଟିଏ ବଡ଼ ଗୁଣ ହେଉଛି ସେ ସେ କୌଣସି କଥାକୁ ପୁଙ୍ଖାନୁପୁଙ୍ଖ ରୂପେ ବିଚାର ଆଲୋଚନା ନ କରି ପଲ୍ଲବଗ୍ରାହୀ ପାଣ୍ଡିତ୍ୟର ପରିଚୟ ଦିଅନ୍ତି ନାହିଁ । ନିନ୍ଦା ପ୍ରଶଂସାକୁ ସେ ଏକ ମଣନ୍ତି । ସହନଶୀଳତାର ମଧ୍ୟ ସେ ଏକ ପ୍ରକୃଷ୍ଟ ଆଲେଖ୍ୟ । ସେଥିପାଇଁ ସେ କହନ୍ତି :—

"ରେ ସଙ୍ଗାତ, ମୋ'ଆଖିରେ ଥରେ ଅନା
ତୋ' ଆଖିରେ ଯାହା ଛଣା ପିତ୍ତଳ
ସେ ମୋ' ଆଖିରେ ସଇ ସୁନା ।"

କବିଚନ୍ଦ୍ରଙ୍କର ପ୍ରତ୍ୟେକ ସୃଷ୍ଟି ହେଉଛି ତାଙ୍କର ପ୍ରଚଣ୍ଡ ପ୍ରତିଭାର ସ୍ମାରକୀ । ତାଙ୍କର ପ୍ରତ୍ୟେକ ସୃଷ୍ଟିର ସୌରଭ କେବଳ ଗୌରବ ସଙ୍କୁଳ ନୁହେଁ, ଯୁଗାନ୍ତକାରୀ ଆଉ ଦିଗନ୍ତ ବିସ୍ତାରୀ ତାଙ୍କର ଅନବଦ୍ୟ ଶୈଳୀ, କଥନ ଭଙ୍ଗୀ, ଶବ୍ଦ ଯୋଜନାର ଚମତ୍କାରୀତାର ସ୍ୱାତନ୍ତ୍ର୍ୟ ମନ ପ୍ରାଣକୁ ମୁଗ୍ଧ କରେ । ଯେ କୌଣସି କଥାକୁ ସେ ସଜେଇ କହିବାରେ, ଲେଖି-ବାରେ ଧୂରନ୍ଧର । ବର୍ତ୍ତମାନ ସେ କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀର ରତ୍ନ ସଦସ୍ୟ ଅଛନ୍ତି । ରାଜ୍ୟ ସଙ୍ଗୀତ ନାଟକ ଏକାଡେମୀର ଉପସଭାପତି ଅଛନ୍ତି ଓ ଏବେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଛନ୍ତି । କହିବା ବାହୁଲ୍ୟ ମାତ୍ର ଯେ କବିଚନ୍ଦ୍ର ତାଙ୍କ କୃତିର କୀର୍ତ୍ତିରେ ନିଶ୍ଚୟ କାଳଜୟୀ ହେବେ, ଓଡ଼ିଆ ଓ ଓଡ଼ିଶା ଥିବାଯାଏ ସମସ୍ତଙ୍କର ଶ୍ରଦ୍ଧେୟ ଓ ସମ୍ମାନନୀୟ ହୋଇ ରହିବେ ।

# ସମ୍ପର୍କ—କଳା ଓ କାଳୀ ମଉସା

ଅଧ୍ୟାପିକା ବିଦ୍ୟୁତ୍‌ଲତା ନନ୍ଦ

ଯଦି କେହି ମୋ ଘରଟା କେଉଁଠି ବୋଲି ପଚାରେ, କୁହେ— କାଳୀବାବୁଙ୍କ ଘର ପାଖରେ । ତାଙ୍କର ପଡ଼ଶା ମୁଁ । ଏଇଟି ହେଲା ମୋ ଘରର ସହଜ ଠିକଣା । ଓଡ଼ିଆ କଳା ସଂସ୍କୃତି ଜ୍ଞାନ ଥିବା ଏଭଳି ବ୍ୟକ୍ତି କେହି ବୋଧହୁଏ ନାହିଁ ଯେ କି କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ବା କାଳୀବାବୁଙ୍କୁ ନ ଚିହ୍ନେ । ସେ ତ ଏକ ବ୍ୟକ୍ତିବିଶେଷ ନୁହନ୍ତି, ଅସାଧାରଣ ପ୍ରତିଭା । ଓଡ଼ିଆ ସଂଗୀତ, ସାହିତ୍ୟ ଓ ସଂଗଠନର ବାହକ ସେ । ଓଡ଼ିଆ କଳା ଓ ସଂସ୍କୃତିକୁ ବଞ୍ଚାଇ ରଖିବାରେ ତାଙ୍କର ସାଧନା ଓ ନିଷ୍ଠା ଏବେ ମଧ୍ୟ ଅବିଚଳିତ ।

ସେ ଓଡ଼ିଶୀ ସଂଗୀତ ଓ ନୃତ୍ୟକୁ ଶାସ୍ତ୍ରୀୟ କରି ଓଡ଼ିଶାର ଗୌରବ ପ୍ରତିଷ୍ଠା କରିଛନ୍ତି । ତାଙ୍କର ଅସୁମାରି ଭଜନ, ଜଣାଣ, କୀର୍ତ୍ତନ ଆକାଶ ବାଣୀରୁ ଯେତେବେଳେ ଝରିଆସେ କି ପାଠୁଆ ଅପାଠୁଆ ପ୍ରତ୍ୟେକଙ୍କ ହୃଦୟ ଅପୂର୍ବ ଆବେଗରେ ଭରିଯାଏ । ସେହି ମଧୁର ସଂଗୀତରେ ଭରି ରହିଥାଏ ଗଭୀର ଆଧ୍ୟାତ୍ମିକତା, ଅନାବିଳ ଭଗବତ୍ ପ୍ରେମ, ଦାର୍ଶନିକ ଅନୁଚିନ୍ତା, କବି ପ୍ରାଣର ଉଚ୍ଛ୍ୱାସ ଓ ଅନ୍ତରଙ୍ଗ ଭାବ । କେତେ ମର୍ମସ୍ପର୍ଶୀ ସେ ସଂଗୀତମୟ ! ସାଂସାରିକ ଜଞ୍ଜାଳରେ ଜଡ଼ିତ ମାନବ କ୍ଷଣକ ପାଇଁ ବିଭୂପଦରେ ଶରଣ ପଶିବାକୁ ଇଚ୍ଛାକରେ । ସେ କେବଳ ସଂଗୀତ ସ୍ରଷ୍ଟା ନୁହନ୍ତି ସୁରକାର ମଧ୍ୟ । ବିଭିନ୍ନ ରାଗ-ରାଗିଣୀର ମୂଳ ତତ୍ତ୍ୱ ବିଷୟରେ ଗଭୀର ଜ୍ଞାନ ଓ ଗବେଷଣା ଦ୍ୱାରା ସେ ସ୍ୱର ସଂଯୋଜନା କରିଥାନ୍ତି ।

ନାଟ୍ୟାଚାର୍ଯ୍ୟ ହିସାବରେ ତାଙ୍କର ଅନେକ ସାମାଜିକ, ଐତିହାସିକ, ପୌରାଣିକ ନାଟକ, ରାସ, ଦାସକାଠିଆ, ବେତାର ନାଟିକା, ନୃତ୍ୟ ନାଟିକା ରଚିତ ହୋଇଅଛି । ଓଡ଼ିଶାର ନାଟ୍ୟକଳା

ଓ ରଙ୍ଗମଞ୍ଚର ସ୍ଥାପନା ପାଇଁ ବିପ୍ଳବ ସୃଷ୍ଟି କରିଛନ୍ତି ସେ । ଜଣେ ପ୍ରଖ୍ୟାତ କବି ଓ ସାହିତ୍ୟିକ ହିସାବରେ ଓଡ଼ିଆ ସାହିତ୍ୟର ଗନ୍ତାଘରକୁ ସମୃଦ୍ଧ କରିଛନ୍ତି ସେ । ତାଙ୍କ ରଚିତ 'ମଞ୍ଜୁଧାରା', କବିଚନ୍ଦ୍ର ଗ୍ରନ୍ଥାବଳୀ ଇତ୍ୟାଦି ଓଡ଼ିଆ ସାହିତ୍ୟର ଅମୂଲ୍ୟ ସମ୍ପଦ । ନିକଟରେ ସାହିତ୍ୟ ଏକାଡ଼େମୀ ପୁରସ୍କୃତ ତାଙ୍କର ଆତ୍ମଜୀବନୀ—"କୁମ୍ଭାର ଚକ" ବାସ୍ତବିକ୍ ଓଡ଼ିଆ ସାରସ୍ୱତଭଣ୍ଡାରକୁ ସମୃଦ୍ଧ କରିଛି । କବିଚନ୍ଦ୍ରଙ୍କ ଲେଖନୀର ବିଶେଷତ୍ୱ ହେଲା ଭାଷା ଓ ଭାବର ସମନ୍ୱୟ । ପ୍ରକାଶ ଭଙ୍ଗୀ ଅତି ସରଳ ଓ ପ୍ରାଣସ୍ପର୍ଶୀ । ବାସ୍ତବିକ୍ ସେ ଜଣେ ବିଶିଷ୍ଟ ଭାଷାକାର । ନାଟକ, ଗଳ୍ପ, କବିତା, ଶିଶୁ ସାହିତ୍ୟ, ବ୍ୟଙ୍ଗ ରଚନା, ଭକ୍ତି ସଙ୍ଗୀତ ପ୍ରତ୍ୟେକ ଲେଖାରେ ତାଙ୍କର ଭାଷା ପଟୁତା, ବର୍ଣ୍ଣନା ଶୈଳୀ ଅନ୍ତରକୁ ସ୍ପର୍ଶ କରେ ।

ଏଭଳି ଏକ ବିରାଟ ପ୍ରତିଭାସମ୍ପନ୍ନ ବ୍ୟକ୍ତି ରହୁଥିବା ଘରଟି ନିଶ୍ଚେ ଏକ ପ୍ରକାଣ୍ଡ ଅଟ୍ଟାଳିକା ହୋଇଥିବ ଭାବି କେହି ଯେଭଳି ଭୁଲ୍ ନ କରନ୍ତି । ସେ ପ୍ରକୃତରେ କବି କଳାକାର । ଜଡ଼ ଜୀବନର ଅହମିକା ତାଙ୍କୁ ସ୍ପର୍ଶ କରିନାହିଁ । ନୀରବ ସାଧକ ସେ ।

ଆମରି ସାଇ । ସେଇ ନୁଆଣିଆ ଖ୍ଲଳଘର । ଘର ଭିତରେ ଦୁଇ ବଖରା ପୁରୁଣାକାଳିଆ କୋଠା । ଗୋଟିଏ ବଖରାରେ ଅନେକ ପୁସ୍ତକ କେବେଠୁ ସାଇତା ହୋଇ ଯତ୍ନ ସହକାରେ ରଖା ଯାଇଛି । ସେଗୁଡ଼ିକ ଓଡ଼ିଆ ସାହିତ୍ୟର ଅମୂଲ୍ୟ ନିଧି । ଅନ୍ୟ ବଖରାଟିରେ ସାମାନ୍ୟ କେତୋଟି ଆସବାବ । ଖଟ ଉପରେ ଧ୍ୟାନମଗ୍ନ ଋଷି ଭଳି ବସିଥାନ୍ତି । ମଉସା । କଲେଜ ଫେରନ୍ତା ବା ଛୁଟି ସମୟରେ ଯେତେବେଳେ ମୁଁ ଘର ଭିତରକୁ ପଶିଯାଏ, ଦେଖେ ଦିନ ଦ୍ୱିପହରରେ ବି କାଳୀ ମଉସା ଟେବୁଲ୍ ଲ୍ୟାମ୍ପ ଜାଳି କଲମ ଧରି ଲେଖି ବସିଥାନ୍ତି । ସତେ ଯେମିତି ଜୀବନର ଘୋର ଅଂଧକାରରେ ସେ ଆଲୋକର ସନ୍ଧାନୀ । ମୋର ପୂଜ୍ୟ ପିତୃତୁଲ୍ୟ ସେ ବାପାଙ୍କର ବନ୍ଧୁ ଆମରି ଆଡ଼ର । ମୋର ମଉସା ଖାଲି ମୋର ନୁହେଁ, ଆହୁରି ଅନେକଙ୍କର ସେ ମଉସା—ଗୁରୁଜନ । ତାଙ୍କଠାରୁ ଅନେକ କଥା ଶିଖିବାର ଅଛି । ଏଇ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ପାଇଁ

ଆମର କର୍ତ୍ତବ୍ୟ ତାଙ୍କଠାରୁ ଜାଣିବା ଓ ଶିଖିବାର କଥା । ଯେତେ-
ବେଳେ କିଛି ପ୍ରବନ୍ଧ ବା ସମୀକ୍ଷା ଲେଖିବାର ଥାଏ, କିଂବା
ସଭାସମିତିରେ ସାହିତ୍ୟ ସଂସ୍କୃତି ବିଷୟରେ କହିବାର ଥାଏ, କାଳୀ
ମଉସାଙ୍କଠାରୁ ଅନେକ ବିଷୟ ପଚାରି ବୁଝିନିଏ । ସେ ଜ୍ଞାନର ଗନ୍ତାଘରୁ
ଝୁଲି ଖୋଲି ବଖାଣି ବସନ୍ତି । ସବୁଠାରୁ ଆଶ୍ଚର୍ଯ୍ୟ ଲାଗେ କେତେ ବହି
ସେ ପଢ଼ିଛନ୍ତି ! ସଂସ୍କୃତ, ବଙ୍ଗଳା, ଓଡ଼ିଆ ସବୁ ଉପରେ ତାଙ୍କର ଗଭୀର
ଜ୍ଞାନ । ଯେତେବେଳେ ସେ ପଚାରନ୍ତି ମୋତେ — ଏ ବହିଟି ପଢିଛ ?
ସେ ବହିଟି ପଢ଼ିଛ ? ମୋର ପ୍ରାୟ ସବୁର ଉତ୍ତର ଥାଏ ନାଁ । ସେ
ବହୁ ପୁରୁଣା ବହି କଥା କୁହନ୍ତି । ଯେଉଁଥିରୁ ଖୁବ୍ ଗଭୀର ଭାବରେ ସେ
ସତ୍ୟତା ଅନୁସନ୍ଧାନ କରିଥାନ୍ତି । ଯେତେସବୁ ନୂଆ ବହି ବାହାରେ
ଅନେକ ତାଙ୍କ ପାଖରୁ ସଂଶୋଧନ କରି ନିଅନ୍ତି । ତାଙ୍କର ପଢିବାର
ପ୍ରଣାଳୀ—ଆମ ଭଳି ନୁହେଁ । ବେଶ୍ ତୁଳନା ଓ ଗବେଷଣା କରି
ସତ୍ୟତା ଉପରେ ପହଞ୍ଚିଲା ପର୍ଯ୍ୟନ୍ତ ସେ ବହିକୁ ଛାଡ଼ନ୍ତି ନାହିଁ ।

ସଂଗୀତ ଉପରେ ମୋର ଜ୍ଞାନ ମୋଟେ ନାହିଁ । ବେଳେ ବେଳେ
ସେ ରାଗ ରାଗିଣୀ ଉପରେ ଚର୍ଚ୍ଚା କରି ବସନ୍ତି । ମୁଁ ଆଶ୍ଚର୍ଯ୍ୟ ହୁଏ,
ନିହାତି ଅଜ୍ଞ ହୋଇ ମଧ୍ୟ କେମିତି ମୁଁ ସହଜରେ ବୁଝିଯାଏ । ତାଙ୍କର
ବୁଝାଇବା ପ୍ରଣାଳୀ ଅତି ସହଜ ଓ ସରଳ । ଆମେ ଯେଉଁମାନେ
ଅଧ୍ୟାପନା କରୁ ଯେଉଁଭଳି ଗବେଷଣା କରି ଅର୍ଥରୁ ଅନର୍ଥ ବାହାର କରି
ଆହୁରି ଜଟିଳକରି ପକାଉ ବିଷୟକୁ, ସେଭଳି ସେ କରନ୍ତି ନାହିଁ, ଖୁବ୍
ସହଜ ବାଟଟା ଦେଖାଇ ଦିଅନ୍ତି । ତାଙ୍କର ଜ୍ଞାନ ବାସ୍ତବିକ୍ ଗଭୀର ।
ଉପର ଠାଉରିଆ ଭାବେ ସେ ବହି ପଢ଼ନ୍ତି ନାହିଁ । ପ୍ରତ୍ୟେକ ବିଷୟରେ
ତାଙ୍କର ଧୈର୍ଯ୍ୟ ଓ ନିଷ୍ଠା ଦେଖି ଆଶ୍ଚର୍ଯ୍ୟ ଲାଗେ ମୋତେ । ଏ ବୟସରେ
ସେ କିଭଳି ଭାବେ କର୍ତ୍ତବ୍ୟ କରି ଚାଲିଛନ୍ତି — ଅବିରତ କଲମ ଚାଲିଛି ।
ଶିଖିବାର କଥା ।

ଅନେକ ଅନୁଷ୍ଠାନର ଉପଦେଷ୍ଟା, ସଭାପତି, ଇତ୍ୟାଦି ସେ ।
ସଭା ସମିତି ମଧ୍ୟ ବେଳେବେଳେ ସେଇ ଘରେ ହୁଏ । ସମସ୍ତଙ୍କ ପାଇଁ
ତାଙ୍କ ଭାଷାରେ ଆନ୍ତରିକତା, ଅନ୍ତରଙ୍ଗତା ପ୍ରକାଶ ପାଇଥାଏ । କିଏ

ପୁଅ ତ କିଏ ବାପା, କିଏ ମା ତ କିଏ ବୋହୂ ଇତ୍ୟାଦି । ଦୁନିଆଁରେ ସେ ନିହାତି ଏକା—ତଥାପି ତାଙ୍କର ଅନେକେ ଆପଣାର, ଅନ୍ତରଙ୍ଗ - ବନ୍ଧୁ, ଜ୍ଞାତି କୁଟୁମ୍ବ ଭଳି, ଯାହା ଉପରେ ସେ ଅଯଥାରେ ବିରକ୍ତ ହୁଅନ୍ତି ନାହିଁ । ନିହାତି ଅସୁସ୍ଥ ନଥିଲେ ଜ୍ଞାନ ଚର୍ଚ୍ଚା ପାଇଁ କୁଣ୍ଠାବୋଧ କରନ୍ତି ନାହିଁ । ସମସ୍ତଙ୍କ ପାଇଁ ତାଙ୍କ ଦୁଆର ଉନ୍ମୁକ୍ତ । କେବଳ ଓଡ଼ିଶା ନୁହେଁ, ଓଡ଼ିଶା ବାହାରୁ ବହୁ ଗୁଣୀ, ଜ୍ଞାନୀ, କବି, ସାହିତ୍ୟିକ, ସଂଗୀତଜ୍ଞ, ଗବେଷକ ତାଙ୍କ ପାଖକୁ ଆସିଥାନ୍ତି ।

ସେ କିନ୍ତୁ ଆମ ସାଇରେ "ଗାଁ" କନିଆ ସିଙ୍ଘାଣି ନାକ ଭଳି, କେତେକ ଅସହିଷ୍ଣୁ, ଈର୍ଷାପରାୟଣ ବ୍ୟକ୍ତି ଓ ଯେଉଁମାନେ କଳାର ଧାର ଧାରନ୍ତି ନି, କେତେ ରକମ କଥା କୁହନ୍ତି । ସାଧାରଣ ମଣିଷର ଦୋଷ ଦୁର୍ବଳତାକୁ ଘାଣ୍ଟିଚକଟି ବଖାଣି ବୁଲନ୍ତି । ହେଲେ ପ୍ରତିଭାର ସୌରଭ ଖେଳି ବୁଲେ ସୀମା ସରହଦ ଡେଇଁ । ସାଧନାର ସିଦ୍ଧି ବିଫଳ ହୁଏନି । ଯେ ଗୁଣୀ, ଯେ ଜ୍ଞାନୀ ଆପେ ଆପେ ପଙ୍କରୁ ପଦ୍ମ ଫୁଟିଲା ଭଳି ସେ ବିକଶିତ ହୁଅନ୍ତି । ସେଇଭଳି କବିଚନ୍ଦ୍ର ।

କାଳୀ ମଉସାଙ୍କ ପାଖାପାଖି ଥିବାରୁ ମନରେ ଭରସା ଆସେ । ସାହିତ୍ୟର ସାଧନାରେ ଶକ୍ତି ପାଇବା ପାଇଁ ସେ ଉତ୍ସାହ ଓ ପ୍ରେରଣା ଦିଅନ୍ତି । ଜୀବନ ଜଞ୍ଜାଳରେ ଘୂର୍ଣ୍ଣି ପଡ଼ିଲା ବେଳେ କଲମ ମୋର ସାଥୀ ହୁଏ ।

କାଳୀ ମଉସା ସେଇଭଳି ବସିଥାଆନ୍ତୁ ଓ ମୁଁ ଛୁଟିବେଳେ ତାଙ୍କ ପାଖରେ ବସି ସାହିତ୍ୟ ଚର୍ଚ୍ଚା କରୁଥାଏ—ଏତିକି ଜଗନ୍ନାଥଙ୍କୁ ପ୍ରାର୍ଥନା ।

# ମୋ ସ୍ମୃତି ପଟରେ
# କବିଚନ୍ଦ୍ର କାଳୀଚରଣ

**ଶ୍ରୀ ନଟବର ସାହୁ**

ଆମ ଗ୍ରାମରେ ମଧ୍ୟ କାଳୀଚରଣ ପଟ୍ଟନାୟକଙ୍କର ଭୂରି ଭୂରି ପ୍ରଶଂସା । ସେ କଟକ ବାଙ୍କାବଜାର ଠିକଣାରେ ଓଡ଼ିଶା ଥିଏଟର୍ସ ଅନୁଷ୍ଠାନଟିଏ ଗଢ଼ିଛନ୍ତି । ଦୈନିକ ଅଭିନୟ ପ୍ରଦର୍ଶିତ ହେଉଅଛି । କାଳୀବାବୁଙ୍କ ସ୍ୱ ଲିଖିତ ନାଟକ ଜୟଦେବ, ହରଣଚ୍ଛଳ, ଭକ୍ତ, ବେକାର, ଅଭିଯାନ, ଚକ୍ରୀ ଅଭିନୟ ହେଉଛି । ଦର୍ଶକ ପ୍ରତ୍ୟେକ ନାଟକକୁ ବାର ବାର ଦେଖିଲେ ସୁଦ୍ଧା ଆହୁରି ଦେଖିବାକୁ ଆଶା କରୁଛନ୍ତି । ତାଙ୍କ ନାଟକରେ ସାମାଜିକ ସମସ୍ୟା ଗୁଡ଼ିକ ଓଡ଼ିଆ ଭାଷାରେ ରୂପ ଦେବାରେ ଏକବାରେ ପ୍ରବୀଣ । କେବଳ କଟକ ସହରରେ ନୁହେଁ ଜିଲ୍ଲାର ଦୂରଦୂରାନ୍ତ ପୁରପଲ୍ଲୀରେ ଓଡ଼ିଶା ଥିଏଟର୍ସର ଭୂରି ଭୂରି ପ୍ରଶଂସା ।

କାଳୀବାବୁଙ୍କଠାରେ ବିଚିତ୍ର କାଉଁଶି କାଠି ଥିଲା । ତାରି ବଳରେ ନୂଆ ଲୋକଙ୍କୁ ନେଇ ତାଙ୍କର କାଉଁଶି ପରଶରେ ଅଳ୍ପ ଦିନ ଭିତରେ ମଞ୍ଚରେ ଠିଆ କରେଇ ପାରୁଥିଲେ ।

୧୯୪୭ ମସିହାରେ ମୁଁ କବିଚନ୍ଦ୍ରଙ୍କର ଓଡ଼ିଶା ଥିଏଟର୍ସରେ "ଆହୁତି" ନାଟକଟି ଦେଖିବାକୁ ଆସିଲି । ଏହା ମୋର ମୋ ଜୀବନରେ ପ୍ରଥମ ଥିଏଟର୍ସ ଦେଖିବା ।

ଡ୍ରପ୍ ଉଠିଲା । ମଞ୍ଚରେ ବିଜୁଳି ଆଲୁଅ ଝକ୍‌ମକ୍ ହୋଇ ପଡ଼ିଲା । କୁଟୀର ଆଗରେ ଗୋଟିଏ କଅଁଳଗଛ ତା ମୂଳରେ ସମାଧି । ସେଥିରେ ଲେଖାଥିଲା "ଶାନ୍ତିର ସ୍ମୃତି" ସମାଧି ନିକଟରେ ଦୀପ, ଧୂପ ଧରି ଆରମ୍ଭ ହେଲା ଭାଷାହୀନ ପୂଜା ଅଭିନୟ । ନାୟକ ଦୁର୍ଲଭ ମୂର୍ଚ୍ଛା ଗଲେ ।

ଭିତରୁ ଶୁଭୁଥାଏ ବାଗେଶ୍ରୀ ରାଗର କରୁଣ ଆଳାପ । ଏଇନେ 'ଅଦ୍ଭୁତ' ନାଟକର ସୂଚନା ଦୃଶ୍ୟ ।

ନାଟକର ଦ୍ୱିତୀୟ ଦୃଶ୍ୟରେ ସୁମଣି ଦେବୀ ପଦ୍ମ ଫୁଲଟିଏ ଧରି ପୋଖରୀ କୂଳରେ ଗାଇଲେ—

ଝରଣା ଝରେ ଅଶ୍ରୁଜଳେ
ପଦ୍ମ ପାଖୁଡ଼ା ଭସେ ଗୋ
ପ୍ରିୟ ମିଳନ ଆସେ

ଏ ସବୁ ଦେଖି ଶୁଣି ମୁଁ ନିଜକୁ ଭୁଲିଗଲି । ବିସ୍ମୟାଭିଭୂତ ହେଲି, ଧନ୍ୟ ଓଡ଼ିଶା ଥିଏଟର୍ସ । ଧନ୍ୟ ଏହାର ଶିଳ୍ପୀବୃନ୍ଦ । ଧନ୍ୟ ଧନ୍ୟ ଏହାର ସ୍ରଷ୍ଟା କବିଚନ୍ଦ୍ର ।

ବାଙ୍କାବଜାର ଗଳି ଭିତରେ ଆଜି ଯେଉଁ ଜାଗାରେ ହେଉଛି ଜନତା ରଙ୍ଗମଞ୍ଚ ଠିକ୍ ସେହି ଜାଗାରେ ଏବଂ ତାର ଫାଟକ ଉପରେ ଝୁଲୁଥିଲା ଓଡ଼ିଶା ଥିଏଟର୍ସର ସାଇନ୍‌ବୋର୍ଡ଼ ।

୧୯୪୭ ମସିହାରେ ଓଡ଼ିଶା ଥିଏଟର୍ସରୁ ସବଶ୍ରୀ ସାମୁଏଲ ବାବୁ, ଦୁର୍ଲଭଦା, ଫଣି, ପୀରନନା, ଟିମା ବାବୁ, ଲକ୍ଷ୍ମୀ ଦେଇ ଇତ୍ୟାଦି ବିଚକ୍ଷଣ କଳାକାରମାନେ ଅନ୍ନପୂର୍ଣ୍ଣାକୁ ଚାଲିଗଲେ । ରହିଲେ ମାତ୍ର ପ୍ରଖ୍ୟାତ ନାମା ହିରୋଇନ୍ ସୁମଣି ଦେବୀ, ଚିନିଆ, 'ସର, ଖେଳି ଏହିପରି କେତେକ ନୂଆ ନୂଆ ଷ୍ଟେଜ ଭୂମିକାରେ ଅଭିନୟ କରୁଥିବା ଅଭିନେତା ଅଭିନେତ୍ରୀ । ତାଙ୍କ କୁମ୍ଭାରଶାଳରେ କାଳୀ ବାବୁ ଆଉ କିଛି ନୂଆ ଲୋକଙ୍କୁ ନେଇ ରହିଯାଇଥିବା କଳାକାରମାନଙ୍କୁ ନେଇ "ରିକ୍ରମାଟି" ଶିଖେଇବା ଆରମ୍ଭ କଲେ । ଠିକ୍ ଏହି ସମୟରେ ମୁଁ ମଧ୍ୟ ତାଙ୍କ ଥିଏଟର୍ସରେ ରହିବାର ସୁଯୋଗ ପାଇଲି । ତାଙ୍କଠାରୁ ଅଭିନୟ ଶିକ୍ଷା ଆରମ୍ଭ କଲି ।

ଅତୀତ ଜୀବନର କେତେ କଷ୍ଟ ସହି ସହି ଅନୁଷ୍ଠାନ ଗଢ଼ି ଆଣିଥିଲେ ଠିକେ ଠିକେ ଜାଣିବାକୁ ପାଇଲି ।

ହନଥିଲା ସେ 'ଧବଳେଶ୍ୱର ଜଣାଣ' ଚଟି ବଷ୍ଟୁଦୁର୍ଲଭ ବାବୁଙ୍କ ହାତରେ କଟକ ବଜାରରେ ବଣ୍ଟୀ କରି ହନ କଟାଉ ଥିଲେ। ତାଙ୍କର ମଧ୍ୟ ଗୋଟିଏ ପୁରୁଣା ପ୍ରେସ ଥିଲା। କାଳୀବାବୁ ଗୀତ ଲେଖନ୍ତି। ତାଙ୍କର ଅତି ପ୍ରିୟ ଗ୍ଣହ ଦୁର୍ଲଭବାବୁ ଛପେଇବା କାର୍ଯ୍ୟ ସାରି ଗୀତ ଗାଇ ବୁଲି ବଷ୍ଟ ବଣ୍ଟୀ କରନ୍ତି।

"କଳା ବଳଦକୁ ଧଳା କଲ ଆହେ
ଧବଳେଶ୍ୱର।" × ×

ଓଡ଼ିଶା ଥିଏଟର ଆରମ୍ଭ ପୂର୍ବରୁ କାଳୀବାବୁ ପୁଷ୍ପ ଠାକୁର ରଜାଙ୍କ ଅଧୀନରେ ଚାକିରି କରିଥିଲେ। ପୁରୁଷୋତ୍ତମ କ୍ଷେତ୍ରରେ ରହିବା କାଳ ଭିତରେ ସେ ରାଜବଂଶୀୟ, ଘଣ୍ଟାବଳୀ, ଦେଉଳ ପରିଚାଳନା ଓ ପଣ୍ଡା ପଡ଼ିଆରୀଙ୍କର ବୋଲି ସଂପୂର୍ଣ୍ଣଭାବେ ଜାଣିଥିଲେ। ଚାକିରିକାଳ ମଧ୍ୟରେ ସେ ଗୀତ ଲେଖିବା ଛାଡ଼ି ନ ଥିଲେ। ସେ ଲେଖିଥିଲେ—

"ବଡ଼ ଦେଉଳେ ବିଜେ ଜଗନ୍ନାଥ" × × ×
ବଡ଼ ରାଜା ଓଡ଼ିଶାର ବଡ଼ ଦାଣ୍ଡ ତାର
ବଡ଼ ଦେଉଳରେ ବିଜେ ଜଗତ ଠାକୁର,
ଦରିଆ ବଡ଼ ତାର ବଡ଼ ତା କାରିଗର
ବଡ଼ ପଣ୍ଡିତ କବି ଓଡ଼ିଶା ରଜାଙ୍କର
ବଡ଼ ଠାକୁର ସହିଁ ଟେକିଛୁ ବେନି ହାତ।

ଗୁଣ ଛନ୍ଦେ ଗୁଣିଆ। ସୁନା ଛନ୍ଦେ ବଣିଆ। ଠାକୁର ରାଜା ତାଙ୍କ ଗୀତ ଲେଖାରେ ପ୍ରୀତ ହୋଇ କବିଚନ୍ଦ୍ର ଉପାଧିରେ ଭୂଷିତ କଲେ।

ସତେ କାଳିଆ ହେଲେ ବି ଓଡ଼ିଆ ସାହିତ୍ୟରେ କବିଚନ୍ଦ୍ର କାଳୀଚନ୍ଦ୍ର।

ରାଜାଙ୍କ ଆଦେଶରେ ୨୨ ପାହାଚରେ ତାଙ୍କୁ ଦୃଢ଼ ଭାବରେ ବସିବାକୁ ଅଧିକାର ମିଳିଲା। [କବିଚନ୍ଦ୍ରଙ୍କ ଦେହ ତ୍ୟାଗ ପରେ ଜଗନ୍ନାଥଙ୍କ ବେଢ଼ା ଭିତରୁ ଅଗ୍ନି ନେଇ କବିଙ୍କ ଶବଦେହ ସଂସ୍କାର ପାଇଁ ମହାରାଜା ଆଦେଶ ଦେଇଛନ୍ତି।

ପୂର୍ବରୁ ମୋହନ ଗୋସ୍ୱାମୀ ଥିଏଟର କଲାବେଳେ କାଳୀ-ବାବୁଙ୍କ ଥିଏଟର ପ୍ରତି ଧାରଣା ସୃଷ୍ଟି ହୋଇଥିଲା । ସେ ଅଧିକାଂଶ ସମୟ ଜଗନ୍ନାଥ ରୂପକୁ ଧ୍ୟାନ କରି ଓଡ଼ିଶୀ ସଙ୍ଗୀତ ବିଷୟରେ ଅନୁ-ସନ୍ଧାନ ଓ ଅନୁଧ୍ୟାନ କରନ୍ତି । ଦେଉଳରେ ଥିବା ଖୋଦିତ ମୂର୍ତ୍ତି, ରେଖାଚିତ୍ର, ମୁଦ୍ରା, ଭଙ୍ଗୀ ଇତ୍ୟାଦି ଅନୁକରଣ କରିବାରେ ବିପୁଳ ଉଦ୍ୟମ କରନ୍ତି ।

ସେ ସବୁବେଳେ ଚିନ୍ତା କରନ୍ତି ଓଡ଼ିଶୀ ସଙ୍ଗୀତ କିପରି ଶାସ୍ତ୍ରୀୟ ସଙ୍ଗୀତ ସ୍ୱୀକାର ପାଇଁ ବିଶ୍ୱ ଦରବାରରେ ପ୍ରତିଷ୍ଠିତ ହେବ । ସେଥିପାଇଁ ସେ ଅନେକ ଗବେଷଣା କରି ବହୁତ ସଙ୍ଗୀତଜ୍ଞମାନଙ୍କ ମତାମତ ନେଇ ଓଡ଼ିଶୀ ସଙ୍ଗୀତକୁ ଶାସ୍ତ୍ରୀୟ କରିବାରେ ସମର୍ଥ ହୋଇଛନ୍ତି । ସେ କେତେଖଣ୍ଡି ସଙ୍ଗୀତ ସମ୍ବନ୍ଧୀୟ ଶାସ୍ତ୍ର ଲେଖିଛନ୍ତି । ଯାହାକି ଓଡ଼ିଶାର ପୁରପଲ୍ଲୀରେ ରହୁଥିବା ସାନ ବଡ଼ କଳାକାର ସେ ସବୁ ପଢ଼ି ଶୁଣି ସଙ୍ଗୀତ ବିଷୟରେ ଜ୍ଞାନ ଅର୍ଜନ କରୁଛନ୍ତି । ତାଙ୍କ ମତରେ ଆମ ଓଡ଼ିଶାରେ ତିନଗୋଟି ସମ୍ପଦରେ ଭରପୁର ।

୧- ସାହିତ୍ୟ ସମ୍ପଦ
୨- ଭାବ ସମ୍ପଦ
୩- ରସ ସମ୍ପଦ

ଓଡ଼ିଶାରେ ଯେତେ ପ୍ରକାର ଗୀତ ଅଛି, ଯଥା :- ଯୋଗୀ ଗୀତ ଚକୁଳିଆ ପଣ୍ଡା, ଲହୁଡ଼ି, କେଳା, ଧୂଡ଼ୁକି, ପୁଚି, ଫୁଲ ବଉଳ ବେଣୀ, ଛାନ୍ଦ, ଭଜନ, ଚଉପଦୀ, ଜଣାଣ, ବନ୍ଦନା, ପ୍ରାର୍ଥନା ଇତ୍ୟାଦି । ଏ ସମସ୍ତ ପ୍ରକାର ଗୀତକୁ ଓଡ଼ିଶୀ କହିଲେ ଭୁଲ ହେବନାହିଁ ।

ଓଡ଼ିଶୀ, ଚମ୍ପୂର ପ୍ରାର୍ଥକତା ବିଷୟରେ କବିଚନ୍ଦ୍ର କହନ୍ତି ଯଦି ନାୟକ ନାୟିକାଙ୍କ ଆଜୀବନ ଚରିତ୍ର ବା ସମ୍ପର୍କକୁ ଆଖ୍ୟାନ କରି ଧାରାବାହିକ ରୂପେ ଆଦ୍ୟଳଚ୍ଛ ୩୪ ଅକ୍ଷର ମାଧ୍ୟମରେ ପରିକଳ୍ପନା କରି ଛନ୍ଦବଦ୍ଧ କରିବା ଅର୍ଥ ଚମ୍ପୂ । ଯେପରି କିଶୋର ଚନ୍ଦ୍ରାନନ ଚମ୍ପୂ । ସେ କହନ୍ତି ଯେ କୌଣସି ଲେଖକ ଉପରୋକ୍ତ ଧାରା ଅନୁସାରେ ୩୪ ଅକ୍ଷର ମାଧ୍ୟମରେ ବିଷୟବସ୍ତୁ ଲେଖି ଚମ୍ପୂ ନାମକରଣ କରି ପାରନ୍ତି ।

ଓଡ଼ିଶା ଥିଏଟର୍ସରୁ ବଡ଼ ବଡ଼ କଳାକାର ବିଦାୟ ନେଲାପରେ ନାଟକ "ରକ୍ତ ମାଟି" ତା ପରେ "କାରଦରଦାର" "ଫଣା ଭୁଇଁ" ଅଭିନୟ କରାଗଲା ।

ଫଣାଭୂଇଁ ନାଟକରେ ଶତାବ୍ଦୀର ଇତିହାସକୁ ନେଇ ଅମିତ୍ରାକ୍ଷର ଛନ୍ଦରେ ଅତି ସୁନ୍ଦର ଶୈଳୀଦେଇ ଦୃଶ୍ୟ କାବ୍ୟ ସୃଷ୍ଟି କଲେ କବିଚନ୍ଦ୍ର କାଳୀଚରଣ ।

ତାଙ୍କର ଅମିତ୍ରାକ୍ଷର ଛନ୍ଦର ସଂଳାପ ଗୁଡ଼ିକ କେଡ଼େ କମନୀୟ !

ଦେଶପ୍ରୀତି ନ ଥିଲା, ତେବେ ବାସ୍ତବ ଦେଶ ପ୍ରେମ କଣ ଠିକାଦାରୀ ! ରାଜନୈତିକ କୁମ୍ଭୀର କାନ୍ଦଣା ପରି ତାଙ୍କ ହୃଦୟରେ ଦେଶକୁ ସ୍ୱାଧୀନ କରିବା ପାଇଁ ବ୍ୟାକୁଳ, ତାଙ୍କ ନାଟକର ସଂଳାପରୁ ପ୍ରତିପାଦିତ ହୋଇଛି ।

ଇଂରେଜ ସରକାର ଭାରତକୁ ଗ୍ରାସକରି ଛାଡ଼ିବା ପର୍ଯ୍ୟନ୍ତ ଏହା "ଫଟା ଭୂଇଁ" ନାଟକରେ ପରିସ୍ଫୁଟ ହୋଇଛି ।

ଯେଉଁ ଦିନ ସାହେବ ଗ୍ରେଟଲେଟ ଆମ ମାଟିରୁ ବିଦାୟ ନେଲେ ସେ ଦିନ ସେ ଗୋଟିଏ ଗୀତ ଲେଖିଥିଲେ—

"ରେ ସୌଦାଗର ବାନ୍ଧ ତୋର ଲାଲ ଫିତା
ଘରେ ଫେର — ଘରେ ଫେର ...

ଫଟାଭୂଇଁ ନାଟକ ଉଦ୍‌ଘାଟନ ଦିବସରେ ଅନ୍ନପୂର୍ଣ୍ଣାର ସବୁ କଳାକାରଙ୍କୁ ନିମନ୍ତ୍ରଣ କରି ଯାଇଥିଲା । ସେମାନେ ନାଟକରେ ଗୁମ୍ଫା ଆଉ କାମ୍ଫା ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟ ହୋଇ କହିଲେ ନାଟକଟି ଚଳଚିତ୍ର ପରି ହୋଇଛି । ଅଭିନେତା ଅଭିନେତ୍ରୀଙ୍କର କିଛି ବାହାଦୁରୀ ନାହିଁ । କେବଳ ଖଣ୍ଡେ କଲମ ମୂଳରୁ ପ୍ରତ୍ୟେକ ପଂକ୍ତିରେ ପରମାଣୁ ବିସ୍ଫୋରଣ ହେଉଛି । ଯଥା :—

ହାଡ଼ କୁଢ଼ ତଳୁ ଦୁବ ଗଜୁରିବ
ସେଇ ଦୁବ ଧନେ ଦାରୁ ହୋଇବ
ସେତିକ ବେଳେ ମାଆ ମନ କଥା
ତୁମ କାରଣିର ବା ଗଡ଼ ଦେବ ।

ସେ ଏଇ ଭାଷାରେ ଗୋରା କମ୍ପାନୀକୁ ଜବାବ ଦେଇଥିଲେ । ସେ ଫାଲ୍‌ଗୁନୀ ନାଟକ ପାଇଁ ସେତେବେଳର ନାମୀ ନେତ୍ରୀ ସରଳା ଦେବୀ ଅନ୍ୟ କେତେଜଣ ରାଜନୈତିକ ବନ୍ଧୁ ବାସ୍ତବରେ ବିସ୍ମୟାଭିଭୂତ ହୋଇ ପଡ଼ିଥିଲେ ।

ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଯେତେବେଳେ ଓଡ଼ିଶା ଗସ୍ତରେ ଆସିଥିଲେ, ଭୁବନେଶ୍ୱର ବିମାନ ଘାଟିରେ ଓହ୍ଲାଇ ବାଣୀବିହାର ବାଟେ କଟକ ମୁକାମସହର ଦେଇ ବାରବାଟୀ କଲପଡ଼ିଆରେ ପହଞ୍ଚିବା ପର୍ଯ୍ୟନ୍ତ କ୍ୟାମେରାମାନ ଦ୍ୱାରା ସେ ତାଙ୍କର ଶୋଭାଯାତ୍ରାର ଚିତ୍ର ସଂଗ୍ରହ କରି ଓଡ଼ିଶା ସରକାରଙ୍କୁ ଦେଇଥିଲେ ।

ତା'ପରେ ତାଙ୍କର ବିପ୍ଳବୀ ମନ ଚିନ୍ତାକଲା ଜଗନ୍ନାଥଙ୍କୁ ପତିତପାବନ କାହିଁକି କହନ୍ତି ? ତାର ସଠିକ ପ୍ରମାଣ ଦେଖେଇବା ପାଇଁ ସେ ଆରମ୍ଭ କଲେ ଓଡ଼ିଆ ଚଳଚିତ୍ର "ଲଳିତା ବିଦ୍ୟାପତି ।"

ଆଜି ସେ ଓଡ଼ିଶାର ସାଂସ୍କୃତିକ ଜନଜୀବନରେ ମହାତରଙ୍ଗ ସୃଷ୍ଟି କରିଛନ୍ତି । ମହାଜ୍ଞାନୀ, ସଙ୍ଗୀତ ବୈଜ୍ଞାନିକ ଡକ୍ଟର କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ଚରଣ ତଳେ ମୋପରି ଜଣେ ଅଜ୍ଞ ଗୁହ କେଉଁ ଭାବରେ ଗୁଣ କୀର୍ତ୍ତନ କରିବ ! ତାହା ସ୍ଫୁରୁ ନାହିଁ ।

ଜଗତ ନାଥ ! ବଡ଼ ଠାକୁର । ଓଡ଼ିଆ ଆକାଶର ସାଂସ୍କୃତିକ ଧ୍ରୁବତାରା, ସଙ୍ଗୀତ ରଙ୍ଗମଞ୍ଚରେ କାଳକାଳକୁ ଆହୁରି ଆଗେଇ ଦୀର୍ଘାୟୁ ହୋଇ ଅବାଟରୁ ଫେରାଇ ବାଟ ଦେଖାନ୍ତୁ ।

———

# ଚିରଞ୍ଜୀବ କାଳି ଭାଇ

**ସରଳା ଦେବୀ**

କେତେବର୍ଷ ତଳେ ଆମ ଜଗତସିଂହପୁର ଟାଉନହଲ୍ ଠାରେ ତୁମକୁ ଆମ ସ୍ଥାନୀୟ ଲୋକମାନେ ଏକ ସମାରୋହରେ ସମ୍ମାନିତ କରିଥିଲେ ଓ ତମ ନାମରେ ଆମ୍ଭେମାନେ ଗୋଟିଏ ସ୍ମରଣିକା ବହି ଛାପି ସମସ୍ତଙ୍କୁ ବାଣ୍ଟିଥିଲୁ । ସେହି ସ୍ମରଣିକା ବହିରେ ମୋର ଗୋଟିଏ ପ୍ରବନ୍ଧ ଛପା ହୋଇଥିଲା । ତୁମର ନାମକୁ ଚିର ସ୍ମରଣୀୟ କରିବାପାଇଁ 'କବିସୂର୍ଯ୍ୟ' ଆଖ୍ୟା ଦେଇଥିଲି ଓ ମୋ ଭାଷଣରେ ଉକ୍ତ ପ୍ରସ୍ତାବକୁ ଉପସ୍ଥାପିତ କରି ବହୁ ଅଧ୍ୟାପକ, ପଣ୍ଡିତ ଏବଂ ସାଧାରଣ ସାହିତ୍ୟ-ପ୍ରେମୀ ଲୋକଙ୍କର ସମର୍ଥନ ପାଇଥିଲି । ସେଥିପାଇଁ ଆମମାନଙ୍କ ଅଭିନନ୍ଦନ ପତ୍ରରେ 'କବିସୂର୍ଯ୍ୟ' ବୋଲି ତୁମକୁ ଆଖ୍ୟା ଦିଆଯାଇଥିଲା ଓ ଗୋଟିଏ ରୌପ୍ୟ ବାକ୍ସରେ ଭରି ଉପହାର ଦେଇଥିଲୁ ।

ତୁମେ ଏ ଯୁଗର କବିସମ୍ରାଟ ଓ ନାଟ୍ୟାଚାର୍ଯ୍ୟ ଏବଂ ପ୍ରସିଦ୍ଧ ସାହିତ୍ୟକାର ଅଟ । ତୁମେ ରାଗମୟ ଛାନ୍ଦକଳାରୁ, ପ୍ରାଚୀନ ଛାନ୍ଦକଳା ପୋଥିରୁ ରାଗ ଛାନ୍ଦମାନ ଉଦ୍ଧାର କରି, ଭାରତ ବର୍ଷକୁ ଆଚମ୍ବିତ କରିଛ । ତୁମେ ଉତ୍କଳ ଭାଷାରେ, ତୁମର ଜୀବନ କଥା "କୁମ୍ଭାର ଚକ" ବହିରେ ଛାପି ଭାରତ ସରକାରଙ୍କଠାରୁ ସ୍ୱୀକୃତି ପୁରସ୍କାର ଲାଭ କରି, ଆମର ଓଡ଼ିଆ ସାହିତ୍ୟକୁ ନବଜୀବନ ଦେଇଛ ।

ମୋର ସାତବର୍ଷ ବୟସରୁ ତୁମକୁ ମୁଁ ଚିହ୍ନିଛି । ତେଣୁ ତୁମର କାବ୍ୟ, ସଙ୍ଗୀତ ଓ ନାଟକ ସାଧନା ସହ ମୋର ସାହିତ୍ୟ ସାଧନାର ଅଙ୍ଗାଙ୍ଗୀ ସମ୍ପର୍କ ରହି ଆସିଛି । ଆଜି ତୁମରି ଭଳି ମୁଁ ଆଜି ଅନ୍ଧ ଓ ଅଥର୍ବ ହୋଇ ପଡ଼ିଛି । ତୁମରି ଭଳି ମୁଁ ଆଜି ଦେହ ଓ ମନରେ ପକ୍ଷାଘାତଗ୍ରସ୍ତ ହୋଇ ପଡ଼ିଛି । ବର୍ତ୍ତମାନ ତୁମର ପରି, ପରକାଳ ସମ୍ବନ୍ଧିତ

କେବଳ ମୋର ସମ୍ପର୍କ ରହିଛି । ତୁମ ନିମନ୍ତେ ମୁଁ ବହୁ ସଂଗ୍ରାମ ୫୦ ବର୍ଷ କାଳ କରିଛି । ଆଜି ତୁମର ଅସରନ୍ତି ସାହିତ୍ୟ ତପସ୍ୟାର ଦୁଃଖ ଦେଖି ଆସିଛି । ତୁମର ପ୍ରାଣ ଚିରକାଳ ରାଗ ସଙ୍ଗୀତର ସାଥି ହୋଇଥିଲା । ଆମର ପୂର୍ବ-ସାହିତ୍ୟ ଦିଗପାଳ ଓ ସଂସ୍କୃତ ପଣ୍ଡିତ-ମାନେ, ଯେପରି ଏ ଯୁଗରେ ଜନତା-ସାହିତ୍ୟ ତଳେ ଜୀବନ୍ତ ସମାଧି ପାଇଗଲେ, ତୁମର ସାହିତ୍ୟ ଅବଦାନ ମଧ୍ୟ ଜୀବନ୍ତ ସମାଧି ତୁମ ଜୀବିତା-ବସ୍ଥାରେ ପାଇ ସାରିଛି । ତୁମର ଅବଦାନକୁ ବନ୍ଦନ କରିବାକୁ, ଏ ଯୁଗର ସାହିତ୍ୟକାର ଏବଂ ଯୁବ-ଜନତା ଅତ୍ୟନ୍ତ ଅକ୍ଷମ । ରାମାୟଣ, ମହାଭାରତ ଏବଂ ଚଣ୍ଡୀ ପୁରାଣମାନ ଯେପରି ଗଞ୍ଜୋଡ଼ମାନେ କଳ୍ପନା କରି ଲେଖିଛନ୍ତି ଏବଂ କାଳିଦାସ, ବାଲ୍ମିକି, ବ୍ୟାସ ଯେପରି ଗଞ୍ଜୋଡ଼ ଏବେ କଥିତ ହେଉଛି, ତୁମର ସାହିତ୍ୟ ଅବଦାନ ମଧ୍ୟ, ଗଞ୍ଜୋଡ଼ କଳ୍ପନା ବୋଲି ଆଗାମୀ କେତେ ଶତାବ୍ଦୀ ଧରି, ଉପରୋକ୍ତ ନାମରେ କଳ୍ପିତ ହୋଇ, କିମ୍ବଦନ୍ତୀରେ ଆଗାମୀ ଯୁଗର ସାହିତ୍ୟ ଇତିହାସରେ ବଞ୍ଚିବ ବା ମରିଯିବ ତାହା ଭଗବାନଙ୍କୁ ଗୋଚର ।

ମୋର ସାହିତ୍ୟ ମଧ୍ୟ ତୁମର ଶ୍ରେଣୀରେ ପଡ଼ି, ଜୀବନ୍ତ ସମାଧି ପାଇ ସାରିଛି । ଆମେ ଦୁଇଜଣ ସାହିତ୍ୟକାର ଆଜି ପରପାରର ଯାତ୍ରୀ । ଆମର ଇହଲୀଳା ବହୁକାଳରୁ ସମ୍ବରଣ ହୋଇଛି । ତୁମେ ମୋର ବଡ଼ ଭାଇ । ତେଣୁ ତୁମକୁ ମୁଁ ଶେଷ ନମସ୍କାର ଜଣାଇଲି । ତୁମପାଇଁ ଉତ୍କଳ ସାହିତ୍ୟ-ସମାଜ ଗୃହରେ ପ୍ରଥମ ଜୟନ୍ତୀ ମହାସମାରୋହରେ ପ୍ରଥମଥର ପାଳନ କରାଇଥିଲି । ସେ ୧୯୪୨ ସାଲ କଥା । ସେହିଦିନରୁ ତୁମର ଜୟନ୍ତୀ, ଓଡ଼ିଶାର ବହୁସ୍ଥାନରେ ସାହିତ୍ୟକାର ଓ ଜନତା ପାଳନ କରି ଆସୁଛନ୍ତି । ଏହା ମୋର ଗୋଟିଏ ଗର୍ବ ଓ ଅଭିମାନ । ତୁମର ପରବର୍ତ୍ତୀ ଜୟନ୍ତୀମାନଙ୍କର ମୁଁ ଅନାହୁତ ହୋଇ ମଧ୍ୟ, ମୋର ତୁମକୁ ସ୍ୱାଗତିକା ଲେଖି, ତୁମର ଜୟନ୍ତୀ ସଭାକୁ ପଠାଇ ଆସିଛି । ତୁମର ଦୀର୍ଘ ଜୀବନ ମୋର କାମ୍ୟ ନୁହେଁ; କାରଣ ତୁମେ ଜୀବିତ-ମୃତ ।

ତୁମର ସାହିତ୍ୟ-କୃତି ସମ୍ବନ୍ଧରେ ମୁଁ ବହୁତ ଗବେଷଣା ମୂଳକ ପ୍ରବନ୍ଧ ତୁମକୁ ଓ ତୁମର ଆନୁଷ୍ଠାନିକ ଭକ୍ତମାନଙ୍କୁ ଦେଇଛି ଓ ତୁମର

ସାହିତ୍ୟ-କ୍ଷେତ୍ରରେ ଗବେଷଣା କରି ଲେଖିବା, ମୋ ପକ୍ଷରେ ଏବଂ ବର୍ତ୍ତମାନର ଯୁବ ସାହିତ୍ୟକାରମାନଙ୍କ ପକ୍ଷରେ ଏକ ଦୁଃସାହସ ଏବଂ ଧୃଷ୍ଟତା ମାତ୍ର । କାରଣ ତମ ସାହିତ୍ୟ ଯୁଗ ବିତି ଗଲାଣି ଦୁଇ ପୁରୁଷ ଧରି ।

ଉତ୍କଳ ସାହିତ୍ୟ ସମାଜର ପ୍ରଥମ ସାହିତ୍ୟ ସପ୍ତାହ ପାଇଁ ନିର୍ମାଣ କରିଥିବା ଅସ୍ଥାୟୀ ରଙ୍ଗମଞ୍ଚରେ ତମକୁ ଲଗାଇ ଓଡ଼ିଶା ଥିଏଟରସ୍‌ ଆରମ୍ଭ କରିଗଲା । ତା ପରେ ବାଙ୍କାବଜାର ଜନତା ଥିଏଟରସ୍‌ ପ୍ରାଙ୍ଗଣରେ ଚାଲିଲା ତୁମର ସାମାଜିକ ନାଟକ ଜୟଦେବ, ରକ୍ତମାଟି, ଘର, ଅଭିମାନ ଆଦିର ପରିବେଷଣ । ମନେ ପଡୁଛି ତୁମର ରାସଦଳ ଭାଙ୍ଗି ଗଲା, ତମେ ନିରାଶ ହୋଇ ବସିଥିଲ । ସେ ଦୁର୍ଦ୍ଦିନରେ ମୁଁ ଏମ୍‌. ଏଲ୍‌. ଏ. ଥିବାବେଳେ, ପାରଳାଖେମୁଣ୍ଡି ମହାରାଜାଙ୍କୁ ତୁମର ସଙ୍ଗୀତ ସାଧନା ବିଷୟରେ ବହୁତ କହିଥିଲି ଓ ଅନୁରୋଧ କରିଥିଲି, ତୁମର ଗୀତ ଶୁଣିବାକୁ । ସେ ମହାରାଜା ଖୁବ୍‌ ଓଡ଼ିଆ ସଙ୍ଗୀତ ପ୍ରିୟ ଥିବାରୁ, ତୁମକୁ ତାଙ୍କ ନିବାସକୁ ଡକାଇ ତୁମର ଗୀତ ଓ ସଂସ୍କୃତ ଗୀତଗୋବିନ୍ଦ ଶୁଣି, ଦୁଇ ହଜାର ଟଙ୍କା ପୁରସ୍କାର ଦେଇଥିଲେ । ଏକଥା ଓଡ଼ିଶାରେ ସମସ୍ତେ ଜାଣିଲେ । ତା'ପରେ ପୁଣି ତୁମେ ରାସ ଅଭିନୟ ସହିତ, ତୁମ ଲିଖିତ ଓଡ଼ିଆ ନାଟକର ଅଭିନୟ ଦେଖାଇବା ପାଇଁ ପ୍ରସ୍ତୁତ ହୋଇଥିଲ । ତୁମର କଣ୍ଠକରେ ତୁମ କଳାର ଅଭିବୃଦ୍ଧି ସେହି କାଳରୁ ସାଧିତ ହୋଇଥିଲା । 'କୁମ୍ଭାର ଚକ' ବହିରେ, ଏହାସବୁ ଲେଖିଥିବ କି ନାହିଁ ଜାଣିନି । କିନ୍ତୁ ତୁମର ଜୀବନ ଇତିହାସରେ ମୋର ନାମ ଉଲ୍ଲେଖ ଦେଖିଲି ନାହିଁ ।

ନାଟକ ଲେଖା, ରିହରସାଲ୍‌, ମଞ୍ଚରେ ବସି ଦେଖିବା ଆଦି ସବୁ କ୍ଷେତ୍ରରେ ମୁଁ ତୁମକୁ ତୁମ ନାଟ୍ୟକାରିତ୍ୱ କୃତିତ୍ୱ ଜୟଯାତ୍ରାରେ ସାହାଯ୍ୟ କରି ଆସିଛି । ତୁମକୁ ମଞ୍ଚରେ ଗାଇବା ଓ ପାର୍ଟ କରିବା ଦେଖିଛି ଏବଂ ଓସ୍ତାଦ ଭାବେ ଧର୍ମଭିତ୍ତିକ ରାସଲୀଳାରୁ ଐତିହାସିକ ଏବଂ ଉଚ୍ଚକୋଟିର ସାମାଜିକ ନାଟ୍ୟକାର ଭାବେ ମଧ୍ୟ ଦେଖିଛି । ପଚାଶତ ବୟସରେ ତୁମ ପକ୍ଷରେ ରାଷ୍ଟ୍ରୀୟ ସମ୍ମାନ ଓ ପୁରସ୍କାର ଲାଭ, ଯେ କୌଣସି ସାହିତ୍ୟିକ

ଏବଂ ନାଟ୍ୟକାର ପକ୍ଷେ ସମାଜର ଚିରନ୍ତନ ଆଦରଠୁଁ ବଡ଼ ନୁହେଁ ନା। 'ପଦ୍ମଶ୍ରୀ' ପଦ ଉପେକ୍ଷା କରି ତମେ ସାମ୍ରାଜ୍ୟକମାନଙ୍କ, ଶାସକମାନଙ୍କ ବିରୁଦ୍ଧରେ ଯେଉଁ ସାହାସ ଓ ଦମ୍ଭ ଦେଖାଇଲ. ତାହା ମଧ୍ୟ ଓଡ଼ିଶାର ଗର୍ବ।

ତୁମର ଜୀବନଯାକ ଗଞ୍ଜେଇ ନିଶା ଏପରି ଧରିଲା ଯେ, ଶେଷ ନିଶ୍ୱାସ ପଡ଼ିବାଯାଏ, ସେ ନିଶା ଛାଡ଼ିଲ ନାହିଁ। ଶୟନେ ସ୍ୱପନେ, ଜାଗରଣେ ତୁମେ କାବ୍ୟବାଣୀ ହୋଇ ରହିଲ। ଆଉ ତୁମର ପଦ, ପଦବୀ ଓ ସରକାରୀ ବୃତ୍ତି ଏପରି ଘୃଣା ହେଲ, ତମେ ପଦ୍ମଶ୍ରୀ ପଦକୁ, ଦେଇବାଲାକୁ ଲେଉଟାଇ ଦେଲ। କାରଣ ତୁମକୁ ଅପମାନ ଲାଗିଲା। ଆଉ ତୁମର ଓଡ଼ିଆ ଭାଷା ଓ ଜାତୀୟ କବି ଓ ଓଡ଼ିଆ ଜାତି ଇତିହାସ ବଞ୍ଚାଇବା ପାଇଁ ଯେ ଚେଷ୍ଟା କଲ, ତାର ମୁଁ ଆଜୀବନ ସାକ୍ଷୀ ରହିଛି। ୧୯୪୨ ସାଲରେ, ତମକୁ କେହି ପଚାରିବେ ନାହିଁ ଭାବି, ତୁମର ଜନ୍ମ ଜୟନ୍ତୀ ଉତ୍ସବ ମହାସମାରୋହରେ ପାଳନ କରାଇଥିଲି ଓ ଯେପରି ଉପହାର ଲୋକମାନଙ୍କଠାରୁ ଗଦା କରାଇଥିଲି ଓ ମୁଁ ନିଜେ ଚନ୍ଦନକାଠ, ରୂପା ବାକ୍ସରେ ଅଭିନନ୍ଦନ ପତ୍ର ତୁମକୁ ଦେଇଥିଲି, ନୂଆ ପାଟ ଓ ସିଲ୍କ ଜାମା ଉପହାର ଦେଇଥିଲି, ହରିହର ମହାପାତ୍ରଙ୍କୁ ସଭାପତି କରାଇଲି, ତାହା ତୁମର ସ୍ମୃତି ପଟରୁ ଲିଭିଯିବଣି। ୧୯୪୨ରେ ଉତ୍କଳ ସାହିତ୍ୟ ସମାଜ ଘରେ, ତୁମେ ମୋର ସାହିତ୍ୟ ସପ୍ତାହ ପାଇଁ ମଞ୍ଚଘର ତିଆରି କରି ଦେଇ 'ଜୀବନ୍ତ ସମାଧି' ଓ 'Girl School' ବାହାରିର ତୁମ ଅଭିନୟ ଦଳ ଦ୍ୱାରା, ଅଭିନୟ କରାଇ ଦେଇଥିଲ ! ଅନ୍ୟାନ୍ୟ ନୃତ୍ୟଗୀତ ଓ ଅଭିନୟ ଆଦିର ରିହରସେଲ୍ କରାଇ-ଥିଲ, ତାହା ମୁଁ ଜୀବନରେ ଭୁଲିବି ନାହିଁ। 'ଅଭିଜାନ,' 'ଜୟଦେବ,' 'ରକ୍ତମାଟି,' 'ଗୀତ,' 'ଉପେନ୍ଦ୍ର ଭଞ୍ଜ,' 'ଗୋପବନ୍ଧୁ,' 'ଚୈତନ୍ୟ' ପ୍ରଭୃତି କବି ଓ ମହାତ୍ମାମାନଙ୍କର କୃତି ଓ ଜୀବନ ଅଭିନୟ ପାଠବ ଦ୍ୱାରା ଶତ ରଜନୀ ଉଦ୍‌ଯାପିତ କରିଲ ଓ ଅପୂର୍ବ ରାଗ ଅଭିନୟ କରାଇଥିଲ ; ତାହା ତୁମର ଅମର କୀର୍ତ୍ତି। ତୁମ ପାଖରେ ବସି ମୁଁ ଲେଖିଛି। କେଜାଣି କେତେ ରୂପା ଡବା, ରୂପା କଲମ, ଦୁଆତ ତୁମର ଅଭିନୟ ଉଦ୍‌ଘାଟନ ଉତ୍ସବରେ ମୁଁ ଉପହାର ଦେଇଛି ଓ ଦିଆଇଛି (ଲୋକେ

ଦେଇଛନ୍ତି ), ତାହା ମୋର ମନେ ଅଛି । ମୋତେ ଅଭିଯାନ ନାଟକ ଉଦ୍‌ଘାଟନ କରିବାକୁ ଡାକିଥିଲ, ମୁଁ ନଶାମଣି ଦେଇ ହାତରେ କରାଇଥିଲି, ତା'ବି ମୋ ମନେ ଅଛି ।

ତୁମେ ମଧ୍ୟ ଘରେ ଗୋଟିଏ ସଙ୍ଗୀତ ସ୍କୁଲ ୧୯୫୦-୬୦ ପରି କରାଇ, ଓଡ଼ିଶୀ ସଙ୍ଗୀତ ଶାସ୍ତ୍ରୀୟମତେ ଶିକ୍ଷାଦାନ ତପସ୍ୟାରେ ବ୍ରତୀ ହୋଇଥିଲ । ମୋ ବୋହୂ ମଧ୍ୟ ସେଠାକୁ ଯାଇଥିଲା ଗୀତ ଶିଖିବାକୁ । ଶ୍ରୀ ଶ୍ୟାମଧୀର ଓ ଶ୍ରୀ ଗୋବର୍ଦ୍ଧନ ମହାନ୍ତି ଶିକ୍ଷକ ଥିଲେ । ଏକଥା'ବି ମୋର ମନେ ଅଛି ।ଏ ଅଂଧାରି ମୂଳକରେ ତୁମକୁ ଏ ଜାତି ହଜେଇ ଦେଲା ।

ଦାନ୍ତଥିଲେ ଦାନ୍ତର ମର୍ଯ୍ୟାଦା କେହି ଅନୁଭବ କରି ପାରିବେ ନାହିଁ । କିନ୍ତୁ ପାକୁଆ ହୋଇ ଭାତ ଚକଟି ଗିଳିଲା ବେଳେ ସେ କଥା ସମସ୍ତଙ୍କର ମନେପଡ଼େ । ନୁହେଁ ?

---

# ରକ୍ତମାଟି ଓ ନାଟ୍ୟକାର କାଳୀଚରଣ

ଅଧ୍ୟାପକ **ଶ୍ରୀଯୁକ୍ତ ମୁରଲୀଧର କର**

"ଦଳି ଗୃଳ ଖାର ତମସା ଘନ ସର୍ଣ୍ଣି
ଯାଉରେ ଜୀବନ ଆସୁରେ ମରଣ
ଥାଉ ଏ ରକ୍ତ ମାଟି
ସତ୍ୟର ଆମେ ମନ୍ତ୍ରୀ ।" (ରକ୍ତମାଟି)

କଳ୍ପଚନ୍ଦ୍ର ନାଟ୍ୟାଚାର୍ଯ୍ୟ କାଳୀଚରଣ ପଟ୍ଟନାୟକ ଏକାଧିକ ରୋମାଞ୍ଚଭରା ହାସ୍ୟରସାତ୍ମକ ନାଟକ ଲେଖି କେବଳ ନୁହନ୍ତି, ସମସ୍ୟା ମୂଳକ ନାଟକ ରଚନା କରି ସେ ଓଡ଼ିଶାର ନାଟ୍ୟ ଜଗତରେ ଅପ୍ରତିଦ୍ୱନ୍ଦ୍ୱୀ ଭାବରେ ପ୍ରତିଷ୍ଠା ଲାଭ କରିଛନ୍ତି । ତାଙ୍କ ରଚିତ ଭାତ, ବେକାର, ପରିବର୍ତ୍ତନ, କ୍ରନ୍ଦନ ଆଦି ସାମାଜିକ ନାଟକମାନଙ୍କ ମଧ୍ୟରୁ 'ରକ୍ତମାଟି' ଅନ୍ୟତମ ।

ରକ୍ତମାଟି ନାଟକର କଥାବସ୍ତୁ ସାମାଜିକ ସମସ୍ୟା ଉପରେ ଆଧାରିତ । ଏହା ୧୯୪୭ ସାଲ ଜୁଲାଇ ମାସରେ ରଙ୍ଗମଞ୍ଚରେ ପରିବେଷିତ ହୋଇଗଲା । ସେଥିପାଇଁ ଏହି ନାଟକର ତତ୍କାଳୀନ ସମୟର ପ୍ରାଣ ସ୍ପନ୍ଦନ ଦେଖିବାକୁ ମିଳେ । ପୁଞ୍ଜିପତି ଓ ଶ୍ରମିକମାନଙ୍କ ମଧ୍ୟରେ ଦେଖା-ଯାଇଥିବା ଦ୍ୱନ୍ଦ୍ୱ, ଅଛୁଆଁ ପ୍ରଥା, ସମସାମୟିକ ରାଜନୀତି, ସମାଜରେ ସମ୍ବାଦ ପତ୍ରର ଭୂମିକା, ସାମାଜିକ ଅନୁଷ୍ଠାନ ମାନଙ୍କରେ ଦେଖା ଦେଇଥିବା କଳଙ୍କର ପ୍ରଚ୍ଛନ୍ନ ଇତିହାସ ରକ୍ତମାଟି ନାଟକରେ ହୋଇଛି ଉଦ୍‌ଘାଟିତ ।

ବାସ୍ତବ ଜୀବନରେ ଘଟିଥିବା ବହୁ ଘଟଣା, ସମସ୍ୟା, ନାଟ୍ୟ-କାରଙ୍କୁ ଖୋରାକ ଯୋଗାଏ ନାଟକ ରଚନା କରିବା ପାଇଁ । ପୁଣି ସେହି ବାସ୍ତବ ଘଟଣା ଦର୍ଶକ ଚିତ୍ତରେ ଯେପରି ଗଭୀର ଭାବରେ ରେଖାପାତ କରେ, ବୋଧେ ଅନ୍ୟ କୌଣସି ନାଟକ ଏତେ କରି ପାରେ ନାହିଁ ।

କାଳୀବାବୁ ପୌରାଣିକ ଓ ଐତିହାସିକ ନାଟକର ଏକ ଦୀର୍ଘ ବିରକ୍ତିକର ପରଂପରାକୁ ଭାଙ୍ଗି ପ୍ରଥମେ ସେ ସମାଜ ଆଡ଼େ ଦୃଷ୍ଟି ଫେରାଇ ଥିଲେ । ସେଥିପାଇଁ ତାଙ୍କ ରଚିତ ସାମାଜିକ ନାଟକରେ ଆମେ ଏକ ଶାଶ୍ୱତ ମୂଲ୍ୟର ସନ୍ଧାନ ପାଉଁ ।

ରକ୍ତମାଟିର କଥାବସ୍ତୁ ପାଞ୍ଚଟି ଅଙ୍କରେ ବିଭକ୍ତ । ଦ୍ୱିତୀୟ ଅଙ୍କରେ ପାଞ୍ଚଟି ଦୃଶ୍ୟ ସଂଯୋଜନା ହୋଇଥିଲେ ହେଁ ଅନ୍ୟ ଚାରୋଟି ଅଙ୍କରେ ତିନିଗୋଟି କରି ଦୃଶ୍ୟ ପରିକଳ୍ପନା କରାଯାଇଅଛି । ସେକ୍‌ସପିଅରଙ୍କ ପଞ୍ଚାଙ୍କ ନାଟକ ପରି ରକ୍ତମାଟିର ହୋଇଛି ଅଙ୍କସଜ୍ଜା । ପ୍ରଥମ ଅଙ୍କରେ ବିଷୟ ବସ୍ତୁର ଉନ୍ମୋଚନ ବା (Exposition). ୨ୟ ଅଙ୍କରେ (Rising action) ବା ଆବେଗର କ୍ରମବର୍ଦ୍ଧିଷ୍ଣୁତା, ୩ୟ ଅଙ୍କରେ (Climax) ବା ଚରମ ମୁହୂର୍ତ୍ତ, ୪ର୍ଥ ଅଙ୍କରେ (Denouncement) ବା ଆବେଗର ନିମ୍ନମୁଖୀ ଗତି ଓ ୫ମରେ (Catastrophe) ବା ପରିଣତି । ପ୍ରତ୍ୟେକ କଥାବସ୍ତୁର ଦୈର୍ଘ୍ୟର ଗୋଟିଏ ସୀମା ଥାଏ । ରକ୍ତମାଟି ନାଟକର ବିଷୟ ବସ୍ତୁର ଦୈର୍ଘ୍ୟ ଯଦିଓ ଖୁବ୍ ଦୀର୍ଘ ନୁହେଁ ତଥାପି ଗୋଟିଏ ବିପ୍ଳବର ସୂତ୍ରପାତ ହେବାପାଇଁ ଯେତିକି ସମୟ ଦରକାର—୫ଟି ଅଙ୍କର ଦୈର୍ଘ୍ୟ ଭିତରେ ନାଟ୍ୟକାର ତାହା ସୁନ୍ଦର ରୂପେ ସଂପାଦିତ କରି ପାରିଛନ୍ତି ।

ଶେଠ ଗଙ୍ଗାଦାସର ନବନିର୍ମିତ ପ୍ରାସାଦର ପ୍ରତିଷ୍ଠା ଉତ୍ସବରୁ ହିଁ ନାଟକର ଅଗ୍ରମାରମ୍ଭ । ଆୟୋଜନ ହୋଇଛି ଭୋଜିର ବିରାଟ ପର୍ବ । ବହୁ ଅଭ୍ୟାଗତ ଅତିଥି ନିମନ୍ତ୍ରିତ ହୋଇ ଆସିଛନ୍ତି ଶେଠ ଗଙ୍ଗାଦାସଙ୍କ ପ୍ରସାଦକୁ । ଗୁମାସ୍ତାଙ୍କ କାରପରଦାର ଅଲେଖ, ଭଦ୍ରବ୍ୟକ୍ତିମାନଙ୍କ ସହିତ ଶେଠ ଗଙ୍ଗାଦାସଙ୍କୁ ପରିଚୟ କରାଇ ଦେଇ କହୁଛି—"ଶ୍ରୀ ଶେଠ ଗଙ୍ଗାଦାସ ଲକ୍ଷ୍ମୀଙ୍କର ବରପୁତ୍ର, ଭାରତର ବହୁ ଜାଗାରେ ବ୍ୟବସାୟ, ଧାନକଳ, ଲୁଗାମିଲ୍, ଖଦଡ଼ ସୂତା ଆଦି ହରେକ କିସମର କାରବାର ଶହ ଶହ ଲୋକ ପୋଷି ହେଉଛନ୍ତି, ଧନର ମାପ ନାହିଁ ।" ଶେଠଙ୍କ ଚରିତ୍ର ସମ୍ପର୍କରେ ଏକ ସ୍ଥୂଳ ଧାରଣା ଅଲେଖର ସଂଳାପରୁ ହିଁ ମିଳୁଛି । ଏଠାରେ ଶେଠ କୃତ୍ରିମ କର୍ଲୋଭର ପରିଚୟ ଦେଇଛି । ସେ

କହିଛି,—"ସବୁ ଆପଣଙ୍କର, ଆପଣମାନଙ୍କର କୃପା, ଧନ କାହାର ? କିଏ ନିଏ, କିଏ ଦିଏ ?" ଏହାର ଉତ୍ତରରେ ଅଲେଖ ବାବୁ କହିଛନ୍ତି,—"ନିର୍ଲୋଭ, ନିର୍ଲୋଭ, ଏକାବେଳେକେ ଦାମୀକର୍ଣ୍ଣର ସାକ୍ଷାତ ଅବତାର ।" ଚଳଚିତ୍ରର ଛବିପରି ଅଲେଖ ବାବୁଙ୍କର ସଂଳାପରୁ ଶେଠଙ୍କର ଚରିତ୍ର ଗୋଟିଏ ପରେ ଗୋଟିଏ ଉଦ୍‌ଘାଟିତ ହୋଇଛି । ଅଲେଖ ବାବୁ ନିମନ୍ତ୍ରିତ ଭଦ୍ରବ୍ୟକ୍ତିଙ୍କ ସଙ୍ଗେ ଶେଠର ପରିଚୟ କରାଇ ଦେଇଛନ୍ତି । ଛବିଲାଲବାବୁ ଓ ବିଷବାବୁ ଡାକ୍ତରଙ୍କ ପରିଚୟ ଅଲେଖ ସଂଳାପରେ ଫୁଟି ଉଠିଛି ।

ପୁଣି ଯେତେବେଳେ ନିରଞ୍ଜନ ବାବୁ ଆସିଛନ୍ତି ଶେଠଙ୍କ ସହିତ ମିଲ ସମ୍ପର୍କରେ କଥାବାର୍ତ୍ତା ହେବା ପାଇଁ ଅଲେଖ ତା' ସମ୍ପର୍କରେ ମତ ପ୍ରକାଶକରି କହିଛି,—"ଭାରି ଗୁଣିଆ, ବଡ଼ ପାଜି, ମେକଆ ନମ୍ବର ଏକ, ଖଣ୍ଡେ ନିଆଁ ଝୁଲି ତ ।" ନିରଞ୍ଜନ ବାବୁ ଜଣେ ବିପ୍ଳବୀ ନେତା ବୋଲି ଏହି ଅଲେଖ ସଂଳାପରୁହିଁ ସୂଚନା ମିଳେ ।

ସଂଳାପହିଁ ଚରିତ୍ରକୁ ବିକାଶ କରିବାରେ ମୁଖ୍ୟ ଅଂଶ ଗ୍ରହଣ କରିଥାଏ । ଏ କ୍ଷେତ୍ରରେ ବିଚାର କଲେ ଜଣାଯାଏ ଯେ ଅଲେଖ ଏପରି ଏକ ଚରିତ୍ର ଯାହା ମାଧ୍ୟମରେ ନାଟ୍ୟକାର ବହୁ ଚରିତ୍ରର ବିକାଶ ସାଧିତ କରିପାରିଛନ୍ତି । ନିରଞ୍ଜନ ସଙ୍ଗେ ଗଙ୍ଗାଦାସ କଥାବାର୍ତ୍ତା କରି ବୁଝି ପାରିଛନ୍ତି ବାସ୍ତବିକ ସେ ଗୋଟିଏ 'ନିଆଁ ଝୁଲି'— ସେ ସହଜରେ ତାଙ୍କ କଥାରେ ବଶ ହେବ ନାହିଁ । ଜନମୁଖ ପତ୍ରିକାର ସମ୍ପାଦକ ଯେପରି ଅର୍ଥଲୋଭରେ ନିଜର ନିଜତ୍ୱକୁ ଶେଠଙ୍କ ପଦତଳେ ବିକ୍ରି କରି ଦେଇଛି, ନିରଞ୍ଜନ ତାହା କରି ନାହିଁ । ସେଥିପାଇଁ ନିରଞ୍ଜନ ପ୍ରତି ଗଙ୍ଗାରାମଙ୍କ ମନୋବୃତ୍ତି ପ୍ରକାଶ ପାଇଛି,— "ହୁଁ ଭାବୁଛି କ'ଣ ଦରକାର ? ପାଣି, ନା ପାଉଁଶ ?" ନିଆଁକୁ ଲିଭାଇବାକୁ ହେଲେ ପାଣି ଦରକାର, ଘୋଡ଼ାଇବାକୁ ହେଲେ ପାଉଁଶ ଦରକାର । ନିରଞ୍ଜନ ବାବୁଙ୍କୁ ସବୁଦିନ ପାଇଁ ଲିଭାଇ ଦେବେ କି ଘୋଡ଼ାଇ ରଖାଇବେ ଏହି ଦ୍ୱନ୍ଦ୍ୱ ଦର୍ଶକ ମନରେ ଆବେଗ ସୃଷ୍ଟି କରେ । ସୂଚନାତ୍ମକ—ସଂଳାପହିଁ ନାଟକ ଅଗ୍ରଗତିର ସହାୟକ । ଘଟଣା ଓ ଚରିତ୍ରର ବିକାଶ ପାଇଁ ଇଙ୍ଗିତ ଧର୍ମୀ ସଂଳାପ ସଂଯୋଜନା ଉନ୍ନତ ନାଟ୍ୟରୁଚିର ପରିଚୟ ଦିଏ । ଗ୍ରାମ

ପଧାନକୁ କୁଲି କରି ଶେଠର କୌଣସି ଏକ କାରଖାନାକୁ ଅଲେଖ ବାବୁ ପଠାଇଥିଲେ । ବିରାଟ ଷଡ଼ଯନ୍ତ୍ର ଓ ଚକ୍ରାନ୍ତ କରି ରାମ ପଧାନଙ୍କୁ ମୃତ ବୋଲି ଘୋଷଣା କରି ତା'ର ସ୍ତ୍ରୀ ପିଲାଙ୍କଠାରୁ ଜମି ହସ୍ତାନ୍ତରିତ କରି ଦେଇଥିଲା ଅଲେଖ ଗୁମାସ୍ତା ।

ଅପ୍ରତ୍ୟାଶିତ ଭାବେ ହଠାତ୍ ଝଡ଼ବେଗରେ ଯେତେବେଳେ ଶୀର୍ଣ୍ଣକାୟ ରାମ ପଧାନ ଆସି ଉପସ୍ଥିତ ହୋଇ ଶେଠର ପ୍ରାସାଦରେ ଚିତ୍କାର କରି କହୁଛି,—"ମୁଁ ମରୁ ନାହିଁ ଆଜ୍ଞା ! କଳ ଗୁଡ଼ିକ, କୋଇଲା ରଙ୍ଗା, ଧୂଆଁରା କୁଡ଼ିଆ, ହାଡ଼ଭଙ୍ଗା ଖଟଣି । ମାସ କେଇଟା ଯାଇନ ପଡ଼ିଲି ବେମାରିରେ । ମଲାଠୁଁ ଉଠିଛି ।" ଅଲେଖ ଗୁମାସ୍ତା ଏହା ଦେଖି ଇତସ୍ତତଃ ହୋଇ ପଡ଼ୁଛି । ରାମ ପଧାନର ପୂର୍ବ ପୁରୁଷ ଭିଟା ଉପରେ ଛିଡ଼ା ହୋଇଛି ଶେଠଙ୍କ ବାସଗୃହ । ମାତ୍ର ଟଙ୍କା ତିରିଶଟା ଧାର ଦେଇ ଅଲେଖ, ରାମ ପଧାନ ସ୍ତ୍ରୀଠାରୁ ଜମି ଛଡ଼ାଇ ରଖିଛି । ଜମିଦାର ରାମ ବାବୁଙ୍କୁ ଅଢ଼େଇ ହଜାର ଟଙ୍କା ଧାର ଦେଇ ସାଦା କାଗଜରେ ଦସ୍ତଖତ କରାଇ ନେଇଛନ୍ତି ଅଲେଖ । ନିରଞ୍ଜନକୁ ଡେପୁଟି ରାଙ୍କରି ମିଳିଥିଲା କିନ୍ତୁ ତାକୁ ଛାଡ଼ି ସେ ଗ୍ରାମରେ ଏକ ପାଠଶାଳା କରିବାରେ ମାତିଛି । ଅଲେଖ ବାବୁଙ୍କ କନ୍ୟା ଆଶା ସହିତ ତା'ର ବାହାଘରର ସମସ୍ତ ଠିକଣା ହୋଇ ଯାଇଥିଲା । କିନ୍ତୁ ଚୌଧୁରୀଙ୍କ ଚାକିରି ଛାଡ଼ିଲା ପରଠୁଁ ଅଲେଖ ରୋକ ଠୋକ ଭାବେ ମନା କରି ଦେଇଥିଲେ ଯେ, ଏ ବାହାଘର ହୋଇ ପାରିବ ନାହିଁ ।

ରାମ ପଧାନଙ୍କ କନ୍ୟା 'ଲତା' ନିଜ ପିତାଙ୍କ ପ୍ରତ୍ୟାବର୍ତ୍ତନର ଖବର ପାଇଲା ମାତ୍ରେ ଶେଠ ଘରକୁ ଛୁଟିଛି । କିନ୍ତୁ ସେତେବେଳକୁ ଅଲେଖ ରାମ ପଧାନ ମନରେ ତା' ସ୍ତ୍ରୀ ସମ୍ପର୍କରେ ବାଜେ କଥା କହି ତାଙ୍କୁ ଶେଠ ଘରୁ ବିଦାୟ କରି ଦେଇ ସାରିଛି । ଲତା ଶୋଭାଯାତ୍ରା ଛାଡ଼ି ଦେଇ ପଳାଇ ଆସିଥିବାରୁ ତାଙ୍କୁ ଖୋଜି ଖୋଜି ଆସିଛି ଚୌଧୁରୀଙ୍କ ସାନ ପୁଅ ନିରଞ୍ଜନର ସାନ ଭାଇ ବିଜୟ । ବିଜୟର ପ୍ରଶ୍ନ ସମ୍ମୁଖରେ ଅଲେଖ ଥତମତ ହୋଇ ଯାଇଛି । ରାମ ପଧାନକୁ ମୃତ ବୋଲି ଘୋଷଣା କରିଥିବା କଥା ମାନିବା ପାଇଁ ସେ ପ୍ରସ୍ତୁତ ନୁହେଁ । ଲତାକୁ ଶେଷରେ ବିଜୟ ନେଇ ଶେଠ ଘରୁ ଫେରିଛି ।

ଶେଠ ଘରୁ ବିଜୟ ବାହାରି ଆସିବା ସମୟରେ ତାଙ୍କ ମୁଣ୍ଡ ବାଜିଛି ଦୁଆର ବନ୍ଧରେ । ଏହା ହେଲା ନାଟକର ପ୍ରଥମ ଅଙ୍କର ପ୍ରଥମ ଦୃଶ୍ୟର କଥା ବସ୍ତୁ । ନାଟକର ସମସ୍ତ ମୁଖ୍ୟ ଚରିତ୍ରର ଅବତାରଣା ଏହି ପ୍ରଥମ ଦୃଶ୍ୟରେହିଁ ହୋଇଛି । ନାଟକର କଥାବସ୍ତୁ ସମ୍ପର୍କରେ ଏକ ସ୍ଥୂଳ ଧାରଣା ମଧ୍ୟ ୧ମ ଦୃଶ୍ୟରେ ବିଭିନ୍ନ ସଂଳାପରୁ କରି ହୁଏ । ୧ମ ଦୃଶ୍ୟ ଶେଷରେ ଯେତେବେଳେ ଶେଠ ଗଙ୍ଗାଦାସଙ୍କ ଘରୁ ବିଜୟ ବାହାରି ଆସିଛି ତା'ର ମୁଣ୍ଡ ବାଜିଛି ଦୁଆର ବନ୍ଧରେ । ଏ ହେଲା ବିଜୟ ଓ ଶେଠ ଗଙ୍ଗାଦାସଙ୍କ ସହିତ ପ୍ରଥମ ସଂଘର୍ଷର ସୂଚନା ମାତ୍ର । ନାଟ୍ୟକାରଙ୍କ ( Symbolic direction ) ବା ସୂଚନାତ୍ମକ ନିର୍ଦ୍ଦେଶନାର ପରିଚୟ ଏଥିରୁ ମିଳେ । ବିଜୟ ଯେଉଁ ସଂଗ୍ରାମ ଚଳାଇଛି ତା'ର ପ୍ରଧାନ ସହକର୍ମିଣୀ, ହୋଇଛନ୍ତି ଲତା ଏବଂ ଏ ସଂଗ୍ରାମ ଯେ କାହା ଉଦ୍ଦେଶ୍ୟରେ ତାହା ଆହୁରି ସ୍ପଷ୍ଟ ହୋଇ ଉଠିଛି ୧ମ ଦୃଶ୍ୟରୁ ।

୨ୟ ଦୃଶ୍ୟରେ ସବର୍ଣ୍ଣ ଓ ଅସବର୍ଣ୍ଣ କର୍ମୀମାନେ ଶୋଭାଯାତ୍ରାରେ ସଙ୍ଗୀତ ଗାନ କରି ଚାଲିଛନ୍ତି—

"ଆଲୋକ ପଥର ଯାତ୍ରୀ
ଚାଲରେ, ଚାଲରେ—......
ଦଳି ଚାଲ ଘୋର ତମସା ଘନ ରାତ୍ରି
ଯାଉରେ ଜୀବନ ଆସୁରେ ମରଣ
ଥାଉ ଏ ରକ୍ତ ମାଟି ।"

ସମାଜର କୁସଂସ୍କାର, ସବର୍ଣ୍ଣ ଓ ଅସବର୍ଣ୍ଣ ଜାତିର ଭେଦାଭେଦର ତମସା ଘନରାତ୍ରୀ ବିରୁଦ୍ଧରେ ଏ ଆଲୋକ ପଥର ଯାତ୍ରୀମାନଙ୍କର ଅଭିଯାନ । ସେମାନେ ଘୋରପରି ମରଣକୁ ବରଣ କରିବେ ପଛେ, କିନ୍ତୁ ପଛକୁ ହଟିବେ ନାହିଁ ।

ଅବଳା-ଶ୍ରମର ପରିଚାଳକ ଶ୍ୟାମବାବୁଙ୍କ ଆଖିରେ ଏ ଅଭିଯାନ ବିଷ ସଦୃଶ । ସେ 'ଲତା'କୁ ଲକ୍ଷ୍ୟ କରି ବିଜୟ ଚରିତ୍ର ଉପରେ ଅକ୍ଷେପ କରନ୍ତି । କିନ୍ତୁ ବିଜୟ କହନ୍ତି—ହେ ଶ୍ୟାମ

ବାବୁଙ୍କ ପରି ଦାମୀ ବନାରସୀ ଆବରଣ ତଳେ ଥାଇ ଦେଶ ସେବା କରୁନାହିଁ । ସେ ଦେଶ ସେବା ମୁଖାପିନ୍ଧା ଦେଶ ସେବା ନୁହଁ । ତା'ର ଅଭିଯାନ ଆପଣଙ୍କର ଅନୁଷ୍ଠାନ, ପ୍ରତିଷ୍ଠାନ, ଅଧିଷ୍ଠାନ ଇତ୍ୟାଦି ନାନାସ୍ଥାନ ବିରୁଦ୍ଧରେ "ଯାହା ଭିତରେ ବସାବାନ୍ଧି ରହିଛି ଉତ୍କଟ ମଡ଼କ, ଅନାବୃଷ୍ଟି, ଅଗ୍ନିପାତ, ଆତଙ୍କ-ପୂତି ଗନ୍ଧ । ଅର୍ଥ ଓ କ୍ଷମତା ଲାଗି ସରଳ ପଲ୍ଲୀ ଜୀବନକୁ କଦର୍ଯ୍ୟଭାବରେ ଭୁଲାଇ ଆପଣମାନେ ବୋଲନ୍ତି ବାଘ । ଆମେ କିନ୍ତୁ ବାଘ ଚାହୁଁନା, ପିମ୍ପୁଡ଼ି ହେବୁ, ଜୀଇବୁ, ଭେଳାବାନ୍ଧି ରହିବୁ । ଖରସ୍ରୁଅ, ଅକାତ ପାଣିରେ ଭୟ ନ ଥିବ ଯେମିତି । ଆମେ ଜୀଇବାକୁ ଚାହୁଁ, ଆଉ ଜୀବନର ପ୍ରତି ମୁହୂର୍ତ୍ତରେ ଅନୁଭବ କରିବାକୁ ଚାହୁଁ ଆମ ଭିତରେ ଜୀଇଛି ମାନବ । ସେ ମାନବ ନରକର କୀଟ ନୁହେଁ ସେ ମୁଖାପିନ୍ଧି ଦେଖାଦିଏନାହିଁ, ସେ ରଙ୍ଗବଦଳକରି ଶିଖି ନାହିଁ—ଆମେ ଚାହୁଁ ଝଡ଼, ଝଞ୍ଜା, ପ୍ରଳୟ । ରାଜପ୍ରସାଦ ବା କୁଟୀର ଧ୍ୱଂସ ହେଉ ତା'ପରେ ତହିଁରେ ଆସିବ ଗୋଟାଏ ସର୍ଜ୍ଜନା ।" ବିଜୟର ଏ ସଂଳାପରୁ ଆଗାମୀ ବିପ୍ଳବର ସୂଚନା ମିଳେ । ସେ ସଂଘର୍ଷ କରିବାକୁ ଚାହେଁ, ଏବଂ ସେହି ସଂଘର୍ଷ ମାଧ୍ୟମରେ ସେ ଗଢ଼ିବାକୁ ଚାହେଁ ଅଭିନବ ସର୍ଜ୍ଜନା । ବିଜୟ ଜଣେ କବି ଓ ବିପ୍ଳବୀ । ସେ ଏହି ନାଟକର ମୁଖ୍ୟ ଚରିତ୍ର । ତାକୁହିଁ କେନ୍ଦ୍ର କରି ନାଟକର ସମସ୍ତ ଚରିତ୍ର ଘୂରି ବୁଲିଛନ୍ତି ।

ଅଲେଖ ଗୁମାସ୍ତା ସହିତ ବିଜୟର ବ୍ୟକ୍ତିଗତ କୌଣସି ବିଦ୍ୱେଷ ନାହିଁ । କାରଣ ସେ ଜାଣେ ନିରଞ୍ଜନ ଅଶାକୁ ବିବାହ କରିବ । ଏଣୁ ଅଲେଖ ତାର ଗୁରୁଜନ, କିନ୍ତୁ ଧୀରେ ଧୀରେ ଯେଉଁ ସଂଘର୍ଷ ଅଲେଖ ଓ ବିଜୟ ମଧ୍ୟରେ ଦେଖା ଦେଇଛି ତାହା କେବଳ ଆଦର୍ଶଗତ ସଂଘର୍ଷ ।

ସମ୍ପୂର୍ଣ୍ଣ ନାଟକରେ ଆମେ ଦୁଇଟି ଆଦର୍ଶର ଚିତ୍ର ଦେଖିବାକୁ ପାଉଁ । ଗୋଟିଏ ଆଦର୍ଶ ପଲ୍ଲୀ ଜୀବନ ସପକ୍ଷରେ । ସରଳପଲ୍ଲୀ ଜୀବନରେ ଯାନ୍ତ୍ରିକ କୃତ୍ରିମତା ନ ପଶୁ, ସହରର ଧନ ଲୋଭରେ ପଲ୍ଲୀର ସରଳ ପ୍ରାଣ ଜନତା [illegible] ନ [illegible] ଯାଉ, ସମାଜରୁ କୁସଂସ୍କାର ଦୂର ହେଉ, କୃତ୍ରିମ ବାବୁଆଣି, ମୁଖାପିନ୍ଧା ନେତାଙ୍କ ଅର୍ଥ ପିପାସା ଚରିତ୍ରନ

ପାଇଁ ଲୋପ ପାଉ, "ଅନ୍ୟ ପକ୍ଷରେ ଦଳେ ଗୃଧ୍ରାନ୍ତ ନିଜର ସ୍ୱାର୍ଥ। ସ୍ୱାର୍ଥ ସିଦ୍ଧି ପାଇଁ ସେମାନେ ନିଜ ଦେଶକଥା ଭାବିଲେ ନାହିଁ । ଦେଶ ପଛେ ରସାତଳଗାମୀ ହେଉ, ନିଜର ଉଦର ପୂର୍ତ୍ତି ହେଉ ଏହାହିଁ ସେମାନଙ୍କର ଲକ୍ଷ୍ୟ । ସେଥିପାଇଁ ସେମାନେ ନିଜ ଘରେ ବିଦେଶୀର କଦର୍ଯ୍ୟ ପଦକ୍ଷେପକୁ ସହ୍ୟ କରନ୍ତି । ଅର୍ଥର ପ୍ରଲୋଭନରେ ନିଜର ମାନବିକତାକୁ ବଳି ଦେଇ ଅଛନ୍ତି । ଏକ ଦିଗରେ ଗୈରିଧୂଶା, ବିଜୟ, ନିରଞ୍ଜନ, ଲତା ଓ ଅସଂଖ୍ୟ ପ୍ରପୀଡ଼ିତ ଗ୍ରାମବାସୀ—ଅନ୍ୟ ଦିଗରେ ଶେଠ ଗଙ୍ଗାଦାସ, ଜମିଦାର, ଅଲେଖ, ବକ୍ଷବାବୁ, ଛବିଲାଲ ଓ ଅନ୍ୟାନ୍ୟ ଭଣ୍ଡ ସ୍ତାବକମାନେ । ଏହି ଦୁଇପକ୍ଷ ମଧ୍ୟରେ ଯେଉଁ ଟଗ୍ ଅଫ୍ ୱାର ( Tough of war ) ହୋଇଛି ସେଥିରେ ଗୈରିଧୂଶା ଓ ଶେଠ ଗଙ୍ଗାଦାସ ମଙ୍ଗରେ ଦଉଡ଼ି ଧରିଛନ୍ତି ମାତ୍ର ଦଉଡ଼ି ହୋଇଛନ୍ତି ବିଜୟ ଓ ଅଲେଖ ।

ଗୈରିଧୂଶା ଟଙ୍କା ଧାର ଦେଇ ସୁଧ ନିଅନ୍ତି । ସୁଧ ଟଙ୍କାରେ ଗଢ଼ିଲେ ବେସିକ ସ୍କୁଲ, ଦାତବ୍ୟ ଚିକିତ୍ସାଳୟ ଆଦି ଜନ ହିତକର ଏପରି କେତେକ ଅନୁଷ୍ଠାନ । ସେ ଗୃଧ୍ରାନ୍ତ ନାହିଁ ଭକ୍ତ ହେଲେ ଭିକମଣଙ୍କୁ ପ୍ରଶ୍ରୟ ଦେବାକୁ, ଗରିବମାନଙ୍କ ମଙ୍ଗଳ ବଢ଼ାଇବାକୁ । ସେଥିପାଇଁ ସେ ବନ୍ୟା ପ୍ରପୀଡ଼ିତମାନଙ୍କ ପାଇଁ ଗୃହ ଆନ୍ଦୋଳନକାରୀମାନଙ୍କୁ କହିଛନ୍ତି— "ଖାଇଲେ ସୁଖ, ମରଣରେ ବି ସୁଖ, ଆଉ ଯଦି ସେ କ୍ଷମତା ନାହିଁ ମର, ବଞ୍ଚି ରହିବାର ଯା'ର ଅଧିକାର ଅଛି ଖାଲି କରି ଦିଅ ଥାନ ସେମାନଙ୍କୁ ।" ଅନ୍ୟାୟ, ଅତ୍ୟାଚାର ଲାଗି ବିପ୍ଳବ କର । ଏହି ବିପ୍ଳବର ସ୍ୱର ଗୈରିଧୂଶାଙ୍କ ମୁଖରୁ ଯେପରି ଶୁଣା ଯାଇଅଛି, ବିଜୟ ମୁଖରୁ ମଧ୍ୟ ସେମିତି ଶୁଣାଯାଇଅଛି । ବ୍ୟୋମ ପତ୍ରଆଡ଼ରେ ନିଜେ ଦେଇଥିବା ସଭାର ବକ୍ତୃତାରେ—"ଜାତିର ଜୀବନ ଲାଗି ଆମକୁ ହସି ହସି ବରି ନେବାକୁ ହେବ ମରଣ । ପଥର ଟଳାଇବାକୁ ଦରକାର ଦେହରେ ବଳ, ଆଉ ସେ ବଳ ଜଣକର ନୁହେଁ, ସ୍ତବ୍ଧ ଗଣ ଶକ୍ତି ।"

କେବଳ ଦେଶ ପ୍ରେମର ରଣହୁଙ୍କାର ମଧ୍ୟରେ ନାଟକକୁ ଭାରାକ୍ରାନ୍ତ ନକରି ନାଟ୍ୟକାର ଏକ ଅଭିନବ ଟେକ୍‌ନିକ୍ ସାହାଯ୍ୟରେ ବିଜୟ ଓ ଲତାର ପ୍ରେମଚିତ୍ର ଆଙ୍କିଛନ୍ତି—କେତେବେଳେ ନାଟକ

ଶହାରସାଲ ଛଳରେ, କେତେବେଳେ ପାହାଡ଼ତଳ ସାନ୍ତାଳୀଗୀତର ଅର୍ଥ କହିବା ଛଳରେ । ବାସ୍ତବିକ ବିଜୟ ଓ ଲତା ଭିତରେ ଗଢ଼ି ଉଠିଥିବା ପ୍ରେମର ଚିତ୍ର ପାଇଁ ନାଟ୍ୟକାର ପ୍ରଶଂସାର୍ହ । ଏକ ଇଙ୍ଗିତ ଧର୍ମୀ ସଂଳାପ ଓ ଜନ୍ମିତ ଚିତ୍ର ମାଧ୍ୟମରେ ପ୍ରେମରହସ୍ୟ ଜୀବନ୍ତ ଓ ହୃଦ୍ୟ ହୋଇ ଉଠିଛି । ଲତା ବିଜୟର କର୍ମରେ ଦେଇଛି ପ୍ରେରଣା, ଉତ୍ସାହ— ତା'ର କବିତାରେ ଭରି ଦେଇଛି ପ୍ରାଣର ନିର୍ଝର । ବିଜୟ ଅଟଳ ମେରୁଭଳି ହସି ହସି ସବୁ ସହି ଯାଇଛି କେବଳ ଲତାର ପ୍ରେରଣା ଯୋଗୁଁ ।

ସମଗ୍ର ୨ୟ ଅଙ୍କରେ ସେହି ଚରମ ମୁହୂର୍ତ୍ତ ପାଇଁ ପ୍ରସ୍ତୁତ ପର୍ବ ହିଁ ଚାଲିଛି । ବିଜୟ ତରଫରୁ—"ଆଗେ ବଢ଼, ଆଗେ ବଢ଼— ବିଶ୍ୱର ଦରବାରେ କର୍ମୀ ତୋ ଦାବୀ ବାଢ଼"ର ସଙ୍ଗୀତ ଯେପରି ପୃଷ୍ଠ ତାନରେ ବାଜି ଉଠି ସମଗ୍ର କର୍ମୀ ଜୀବନକୁ ଏକ ନବଚେତନାରେ ଉଜ୍ଜୀବିତ କରିଛି । ଶେଠର ଟଙ୍କା ସ୍ରୋତର ଋଣଝଣ ବାଜଣାରେ ଅନେକଙ୍କ କାନ ବଧିର ପଡ଼ିଯାଇଛି । ସେମାନେ କେବଳ ଟଙ୍କାର ବାଜଣାହିଁ ଶୁଣିଛନ୍ତି । ତାଙ୍କ ଆଗରେ 'ଆଗେ ବଢ଼' ଆଦର୍ଶର ସ୍ୱର ନିତାନ୍ତ କ୍ଷୀଣ ମନେ ହୋଇଛି । ଶ୍ୟାମ ବାବୁ ଶେଠ ଗଙ୍ଗାଦାସଙ୍କଠାରୁ ପ୍ରଚୁର ଅର୍ଥ ସାହାଯ୍ୟ ଆଣି ରାତି ସାଢ଼େ ସାତଟା ପରେ ହପ୍ତାଦଶଠାରୁ ପୁଣି ସପ୍ତଦଶ ବର୍ଷିଆ ପର୍ଯ୍ୟନ୍ତ କେତେଜଣ ବଡ଼ ବଡ଼ ପିଲାଙ୍କୁ ଅବଳା ଶ୍ରମରେ ଶେଠ ଘରକୁ ଚାଳଣ କରିଛନ୍ତି ।

ଅଲେଖ ପ୍ରଚୁର ଅର୍ଥ ଦେଇ ଆଖପାଖ ଅଞ୍ଚଳରୁ ସବୁ ଧାନ ଖରିଦ କରି ଆଣିଛନ୍ତି । ଶ୍ରମିକମାନେ ମିଲ ବନ୍ଦ କରିଛନ୍ତି । ସଭା ପରେ ସଭା ଚାଲିଛି କିନ୍ତୁ ଛିବଲାଲ, ଶେଠର ଅର୍ଥ ଲୋଭରେ ମିଥ୍ୟା ଖବର ମାନ ଗ୍ରାମରେ ଲାଗିଛନ୍ତି । ଗ୍ରାମ ପଧାନ ଟଙ୍କା ମୂଳ ଦେଇ ତା'ର ସୁଧର ହିସାବ କରିବା ଲଗି ଶେଠ ଘରକୁ ଆସିଛି । ଅଲେଖ ତାକୁ ଜମି ବନ୍ଧକ ହୋଇଯିବା କଥା କହିଛି । କିନ୍ତୁ ଗ୍ରାମ ପଧାନ ଚାହିଁଛି ତା'ର ବାପଗୋସାଇଁର ସେହି ପୁରୁଣା ଘରଡିହ ଖଣ୍ଡିକ ଫେରାଇ ନେବା ପାଇଁ । ଶେଷରେ ଅଲେଖ ତାକୁ ଅଦାଲତରେ ସେ ବିଷୟରେ ଦାବୀ କରିବାପାଇଁ କହି ଘରୁ ତଡ଼ି ଦେଇଛି ।

ଧରମୁ ଓ ଲୋଚନର ସଂଳାପ ମଧ୍ୟ ଦେଇ ଏ'ଜାତି ଭିତରେ ବହୁ ଦିନରୁ ସଞ୍ଚିତ ଅଭିମାନର ସ୍ୱର ଶୁଣାଯାଏ । ଲୋଚନ ସବୁଠି ସଭିଙ୍କର ଅଧିକାର ସମାନ ହେବ ବୋଲି କଳ୍ପନା କରୁଛି କିନ୍ତୁ ଧରମୁର ବିଶ୍ୱାସ ହୋଇ ନାହିଁ । ସେ ତାର ବୟସର ଅଭିଜ୍ଞତାରୁ କହୁଛି,—
"ବଣ ଭିତରେ ଚଢ଼େଇ ଚୁଆ ପାଇଲେ ଉଡ଼ିବ ସିନା, ପଞ୍ଜୁରୀ ଭିତରେ ଛୁଟି ପାଇଲେ ସେ ଖାଲି ମୁଣ୍ଡ ବାଡ଼େଇ ହେବ — ଆଉ କିଛି ନୁହେଁ । ଆମେ କୁରୁମ, ଆମ ପିଠିରେ ପଥର ବୁହାଇ ଦେଉଳ ତୋଳାଇ ନାଆଁ କରିବେ ଇନ୍ଦ୍ରଦ୍ୟୁମ୍ନ । ଆମେ ପୋକ ଯୋକ ଖାଇ ଜୀଇଥିବା, ସେଇ କୁରୁମ ହୋଇ ।"

ଏକ ନିରପେକ୍ଷ ଦୃଷ୍ଟିକୋଣରୁ ବିଚାର କଲେ ଜଣାଯାଏ ଓଡ଼ିଆ ସମାଜର ଇତିହାସ ସତେ ଯେପରି ଏହି ପଦକ କଥାରେ କରିଛି ଆତ୍ମପ୍ରକାଶ । ଏହି ଜାତି ବାରମ୍ବାର ଧର୍ଷିତ ହୋଇଛି । ତା'ର ଦାବୀ ପାଇଁ ଚିତ୍କାର କରିଛି । କିନ୍ତୁ କେତେଜଣ ଇନ୍ଦ୍ରଦ୍ୟୁମ୍ନ ଏ ଜାତିରେ ଜନ୍ମ ହୋଇଛନ୍ତି ତାହାର ହିସାବ ନାହିଁ ଯେ ଖାଲି, ମଣିଷ ପିଠିରେ ପଥର ବୁହାଇ, ଦେଉଳ ତୋଳାଇ ବାହା ବା ନେଇଛନ୍ତି । କିନ୍ତୁ ଲୋଚନ ପରି ଅନେକ ଆଜି ଭାବୁଛନ୍ତି—କୁରୁମ ଯାହାର ଅବତାର, ପୁଣି ବରାହ ବି ତା'ର ଅବତାର । କେବେ ପୁଣି ଏହି ବରାହ ଅବତାର ଜାଗିବ ???

ନାଟକର ତୃତୀୟ ଅଙ୍କରେ ଗ୍ରାମ ପଧାନ ସମେତ ବହୁ କୁଲି ସର୍ଦ୍ଦାର ଓ ଶ୍ରମିକ ଆସି ଧକ୍କା ମାରିଛନ୍ତି ଶେଠର ଦୁଆରେ । ସମସ୍ତଙ୍କ ହାତରେ ଗୋଟାଏ ଉଞ୍ଚା ଠେଙ୍ଗା, ଏହି ବୋଧେ ବରାହ ଅବତାରର ରୂପ । ଏମାନଙ୍କ ଭୟରେ ଶେଠ ଘରୁ ବାହାରି ପାରୁନାହିଁ । ଗ୍ରାମ ପଧାନ ତାହାରି ଢିହ ଉପରେ ଛିଡ଼ା ହୋଇ ସାତ ପୁରୁଷ ଘଟଣାମାନ ମନେ ପକାଉଛି । ଆଖିରୁ ତାର ଝରି ଆସିଛି ଲୁହ । କୁଲି ସର୍ଦ୍ଦାର ତାକୁ ସାନ୍ତ୍ୱନା ଦେଇ କହୁଛି—"କାନ୍ଦନା, ଦି'ଟୋପା ଲୁହ ଝରାଉଛୁ କାହିଁକିରେ ? ହଜାର ହଜାର ଟୋପା ଲୁହରେ ଚୂନ, ସୁରୁକି ଗୋଳା ହୋଇ ଠିଆ ହୋଇଛି ଏହି ହାଣ୍ଡିଶାଳ । ଯା' ଭିତରେ ହାଣ୍ଡି ରହନ୍ତି, ହାଣ୍ଡି ଖାଆନ୍ତି ହାଣ୍ଡି ଶୁଅନ୍ତି । ଆମେ ପିମ୍ପୁଡ଼ି···ଭୁନନ୍ତି । ଆମକୁ ବିଳ

ଖେଳିବାକୁ ହେବ, ହାତୀ ଶୁଣ୍ଢ ଭିତରେ ପଶିବାକୁ ହେବ, ମଗଜ ଖାଇବାକୁ ହେବ ।"

ଶେଠର ସୁଖର ସୌଧକୁ ଧୂଳିସାତ କରି ଦେବା ପାଇଁ ଯେତେବେଳେ କ୍ଷୁଧିତ ଶ୍ରମିକ ଦଳ ଉଦ୍ୟତ ହୋଇଛନ୍ତି ସେତିକି ବେଳେ ବିଜୟ ବାବୁ କହିଛନ୍ତି,—"ମରିବାକୁ ଆମେ, ମାରିବାକୁ ନୁହେଁ ଆମର ଜନ୍ମ । ଏ ସବୁ କାହିଁକି ?" ଗାନ୍ଧିଜୀଙ୍କର ଅହିଂସା ନୀତିର ପ୍ରଭାବ ବିଜୟ ଚରିତ୍ରରେ ପ୍ରକାଶ ପାଇଛି । ବିଜୟ ପୋଲିସ ଦ୍ୱାରା ଆରେଷ୍ଟ ହୋଇଛି । ଏ ଅହିଂସା ସଂଗ୍ରାମର ସେନାପତିର ଗଳାରେ ଲତା ଲମ୍ବାଇ ଦେଇଛି ପୁଷ୍ପର ଜୟମାଳ୍ୟ । ଲତା ଉପରେ ଧର୍ମଘଟର ଗୁରୁଦାୟିତ୍ୱ ଛାଡ଼ି ଦେଇ ବିଜୟ ହସି ହସି କାରାବରଣ କରିଛି । ଜମିଦାର ବାବୁ ବିଜୟଙ୍କୁ ଜାମିନ୍‌ରେ ମୁକୁଳାଇ ନେବା ପାଇଁ ଆସି ପହଞ୍ଚିଛନ୍ତି । ସେ ତାଙ୍କର ଭୁଲ ନିଜେ ବୁଝିପାରି ଶେଠପକ୍ଷ ଛାଡ଼ି ଚାଲି ଆସିଛନ୍ତି, କାରଣ ଶେଠ ଦାମ ବାବୁଙ୍କ ଦଶ ହଜାର ଟଙ୍କା ଦାବୀ କରି ମିଛରେ କୋର୍ଟରେ ନାଲିସ କରିଛି ।

ଏହାହିଁ ନାଟକର ଚରମ ମୁହୂର୍ତ୍ତ । ଯେଉଁଠି ହିଂସାର ଉପରେ ଅହିଂସାର ଜୟଗାନ ଉଚ୍ଛୁଳି ଉଠିଛି । ଅନ୍ୟାୟ ବିରୁଦ୍ଧରେ ନ୍ୟାୟର ପତାକା ଉତ୍ତୋଳିତ ହୋଇଛି । ବିଜୟର ବନ୍ଧନରେ ହିଁ ମାନବିକତାର ମୁକ୍ତି । ପୁଞ୍ଜିବାଦ ଧ୍ୱଂସ ହେଉ ର ସ୍ଲୋଗାନ ମଧ୍ୟରେ ଯେପରି ଲକ୍ଷ ଲକ୍ଷ ମାନବ ପ୍ରାଣରେ ମାନବିକତା ଜାଗି ଉଠିଛି । ସେମାନେ ବୁଝିଛନ୍ତି— "ଟଙ୍କାରେ ମଣିଷକୁ କିଣାଯାଏ—ମନୁଷ୍ୟତ୍ୱକୁ କିଣାଯାଏ ନା, ଟଙ୍କା ଦେଇ ସଭ୍ୟ ବୋଲାଇ ପାରେ ଲୋକ, କିନ୍ତୁ ସଭ୍ୟତା ପାଇ ପାରେ ନା ।" ବିଜୟ ଓ ଶେଠ ମଧ୍ୟରେ ଥିବା ଆଦର୍ଶ ମଧ୍ୟରେ ସଂଘର୍ଷର ଚରମ ପରିଣତି ଏହିଠାରେହିଁ ହୋଇଛି ।

ଚତୁର୍ଥ ଅଙ୍କରେ ଗୁମାସ୍ତା ନିଜର ଭୁଲ ନିଜେ ବୁଝିପାରିଛନ୍ତି । ସେ ବୈଦ୍ଧୂଷିଙ୍କଠାରୁ କ୍ଷମାଭିକ୍ଷା ଚାହିଁଛି । ଆଶା ସହିତ ନିରଞ୍ଜନର ବିବାହ କରାଇ ଦେଇଛି । ସର୍ବଶେଷରେ ୫ମ ଅଙ୍କରେ ଶ୍ରମ ପଧାନ ଉଦ୍ଧାର ଦାମ ଦେଇଯାଇଛି ନିଜର ରକ୍ତପାତରେ । ନାଟକର ପରିଣତି

ଅତି ଆକସ୍ମିକ ଭାବରେ ଘଟିଛି । ରକ୍ତମାଟି ନାଟକର ପରିଣତି ଅନ୍ୟାନ୍ୟ ସାମାଜିକ ନାଟକଠାରୁ ସମ୍ପୂର୍ଣ୍ଣ ଭିନ୍ନ । ନାଟ୍ୟକାର ସମସ୍ୟାର ଉତ୍‌ଥାପନ କରିଛନ୍ତି,—ସମସ୍ୟାର ଉପାୟ ବତାଇ ଦେଇଛନ୍ତି କିନ୍ତୁ ନିଜେ ତାର ସମାଧାନ କରି ନାହାନ୍ତି ।

ବିଜୟ କବି, ବିପ୍ଳବୀ ପୁଣି ଆଦର୍ଶ ବାଦୀ । ସେ ଜୀବନଟାକୁ ସୀମାବଦ୍ଧ କରି ରଖିବାକୁ ଚାହେଁ ନାହିଁ । ସେ ଲତାକୁ କହୁଛି— "ଜୀବନଟା ଯେଉଁଠି ମରଣ, ସାଧନା ଯେଉଁଠି ଅଭିଶାପ, ପ୍ରକୃତି ଯେଉଁଠି ବିକୃତ ବିବେକ ସେଇଠି ନିତି ଆତ୍ମହତ୍ୟା କରେ । ଆଘାତରେ ଚିତ୍କାରମାରେ—ସଙ୍ଗୀତର ସ୍ୱର ବାହାରେ ନାହିଁତ, ଚିତ୍କାର କରି କେତେ ଦିନ ବଞ୍ଚି ରହିବେ ଏ ଲୋକେ ? ଏଠାରେ ମଳୟ ଆଜି ପୁଞ୍ଜିବାଦର ଦୁର୍ଗନ୍ଧରେ ବିଷାକ୍ତ । ଏ ପୂତିଗନ୍ଧରେ କେତେ ଦିନ ବଞ୍ଚି ରହି ପାରିବ ।"

ଦେଶର ସାମ୍ୟବାଦ ଆଣିବାକୁ ହେଲେ ଦେଶବାସୀଙ୍କୁ କଷ୍ଟ ସ୍ୱୀକାର କରିବାକୁ ପଡ଼ିବ । ଗଣଶକ୍ତିର ଏକାଗ୍ରତା ଓ ସାଧନା ଦରକାର । ଯେଉଁ ଦେଶରେ ଦୁଇଓଳି ଗଣ୍ଡେ ଖାଇବାକୁ ଦାନା ଏବଂ ପିନ୍ଧିବାକୁ କନା ମିଳେ ନାହିଁ ସେଠି କି ଆଦର୍ଶ ତିଷ୍ଠି ପାରିବ ? ଚାରିଆଡ଼େ ଭୋକିଲା ପଟୁଆର, ହା ଅନ୍ନ, ହା ଅନ୍ନ ବୋଲି ଆର୍ତ୍ତନାଦ ଏବଂ ଗଣ ଶକ୍ତିର ଅଭାବ । ଆଦର୍ଶ ରକ୍ଷା ପାଇଁ ଉପଯୁକ୍ତ ପରିବେଶ ଓ ଜଳବାୟୁ ଦରକାର । ଯନ୍ତ୍ର ଦାନବର ଧ୍ୱଂସ ଲାଗି ଗଣଶକ୍ତି ଓ ସାଧନା ଯେଉଁଠାରେ ଗଢ଼ି ହୋଇ ପାରିବ ସେହି ସ୍ଥାନକୁ ବାଛି ନେଇଛନ୍ତି ବିଜୟ । ବିଜୟର ଆଦର୍ଶରେ ସହଯାତ୍ରିଣୀ ହୋଇଛନ୍ତି ଲତା । ଘନ ଅମା ଅନ୍ଧକାର ମଧ୍ୟରୁ ସେମାନେ ଆଗେଇ ଯାଇଛନ୍ତି ଆଲୋକର ସନ୍ଧାନରେ । ସେ ଆଲୋକ କେତେ ଦୂରରେ କିଏ ଜାଣେ ? ପୁଣି ସେ ଆଲୋକ କେବେ ମିଳିବ ତାହା କିଏ କହି ପାରିବ ? ହେଉ ପଛେ ସେ ରାସ୍ତା ଅସରା, କଣ୍ଟକିତ, ଦୁର୍ଗମ ତଥାପି ସେମାନେ ଚାଲିବେ । ନାଟକର ଅନ୍ତିମ ମୁହୂର୍ତ୍ତରେ ବିଜୟ କଣ୍ଠରୁ ଝରିଛି ସଙ୍ଗୀତର ମୂର୍ଚ୍ଛନା—"ଯାହାରେ ଅତିଥି ବୋଲି, ତୁ ବରଣ କଲୁରେ ଦୁଆରେ ତୋର ବାହାରେ ବରନ ଗୋରା, ଭିତରେ ପରା ଅଙ୍ଗାର ତୋର । × × ×

ଆସଲେ ପଲ୍ଲୀ ବଧୂ ! ପିନ୍ଧାଇବେ ରକ୍ତଗାର,
ଜାଳ ତୋ ପଞ୍ଚ ଦୀପ ମାଙ୍ଗଳିକ ଶଙ୍ଖ ଧର
କାନ୍ଦେରେ ରକ୍ତମାଟି, ରକ୍ତେ ଯାର ଜନ୍ମ ତୋର
ତା ବୁକୁ ଭିନ୍ନ କରେ, ଦୂର ବିଦେଶୀ ଗୋର ।"

ଭାରତର ସ୍ୱାଧୀନତା ସଂଗ୍ରାମର ଏକ ପ୍ରତୀକାତ୍ମକ ଚିତ୍ର କାଳୀବାବୁ ଏହି ନାଟକରେ ସୂଚନା ଦେଇଛନ୍ତି । ବ୍ରିଟିଶ ଶାସନକୁ 'ବିଦେଶୀ ରକ୍ତ ଗୋର' ବୋଲି ବୁଝାଯାଇ ପାରେ । ଯେ ଏ ଦେଶକୁ ଶୋଷଣ କରି ବାହାରେ 'ବରନ ଗୋରା' ଦେଖାଇ ଭିତରେ ଅଙ୍ଗାରର ପରିଚୟ ଦେଇଛି । ବାସ୍ତବରେ କାଳୀଚରଣଙ୍କ ସାର୍ଥକ ପ୍ରତିଭା ଅଭାବ ମଧ୍ୟ ଓଡ଼ିଆ ଜୀବନର ବିକଟ ବାସ୍ତବତାକୁ ରୂପାୟିତ କରିଛି ଏଥିରେ । କବିର କଳ୍ପନା ଗୁଡ଼ କାଳୀବାବୁ ଏଥିରେ କହିଛନ୍ତି,—

"ପ୍ରଚଳିତ ରାଜନୀତିର ବିରାଟ ବିଡ଼ମ୍ବନାକୁ ମନୁଷ୍ୟ ତାର ମାପକାଠିରେ କଳନା ? ସେ ବାସ୍ତବରେ ଲୋଡ଼ିଛନ୍ତି ବ୍ୟକ୍ତିତ୍ୱର ବିକାଶ, କିନ୍ତୁ ବିରୋଧରେ ହୋଇଛି ମହତ୍ତ୍ୱର ବିକ୍ଷେପ ।" ବାସ୍ତବିକ ରକ୍ତମାଟି ଏକ ସାର୍ଥକ ନାଟକ ଏଥିରେ ସନ୍ଦେହ ନାହିଁ । ରକ୍ତମାଟିର ଜନ୍ମ ସମ୍ପର୍କରେ ନାଟ୍ୟକାର କହିଛନ୍ତି—"ସେତିକ ବେଳେ ରକ୍ତ ଦେଇ ଅଳସୁଆ କାରିଗର ପୁଣି ମାଟି ଦଳିଲି, ସାଧିଲି ; ଠିକ୍ ମାସକଟାରେ ପୁଣି ହାଣ୍ଡି ମାଠିଆ ସେଇଠୁ ଥୋକେ ପସନ୍ଦ କଲେ, କିଣିଲେ—କହିଲେ କୁମ୍ଭାର ଜୀଇଁଛି ।"

ବାସ୍ତବିକ କୁମ୍ଭାର କାଳୀଚରଣ ଯେ ନାଟକ ଭିତରେ ଜୀଇଁଛି ଏଥିରେ ସନ୍ଦେହର ଅବକାଶ ନାହିଁ । ସେ ଚରିତ୍ରର ଯେଉଁ ହାଣ୍ଡି ମାଠିଆ ଗଢ଼ିଛନ୍ତି ସେ ଅଭଙ୍ଗା ଯୁଗ ଯୁଗ ଧରି ସେମିତି ରହିବ, ରକ୍ତଦେଇ ଯେଉଁ ରକ୍ତମାଟି ଗଢ଼ା ହୋଇଛି ସେ କି କେବେ ନଷ୍ଟ ହେବ ? ନାଟକର ପରିଣତି ଓ ସଂଘର୍ଷର ପରିକଳ୍ପନା ଅତ୍ୟନ୍ତ ଚିତ୍ତାକର୍ଷକ ହୋଇଛି । କେହି କେହି ସମାଲୋଚକ 'ଉଦୟ ପଥେ' ନାମକ ବଙ୍ଗଳା ନାଟକର ପ୍ରଭାବ ଶେଷ ଦୃଶ୍ୟରେ ପଡ଼ିଛି ବୋଲି ବିଶ୍ୱାସ କରନ୍ତି । କିନ୍ତୁ କାଳୀ ବାବୁଙ୍କ ନିଜସ୍ୱ ପ୍ରତିଭା ଏଥିରେ ସୁସ୍ପଷ୍ଟ । ସବୁ ଦୃଷ୍ଟିରୁ ବିଚାର କଲେ କାଳୀବାବୁଙ୍କ 'ରକ୍ତ ମାଟି' ନାଟକ ଏକ ସାର୍ଥକ ସୃଷ୍ଟି !

---

# ଅଲଗା ଦାଗ

**ମହମ୍ମଦ ରଫିକ୍**

ସେ ଆଜିକି ଅନେକ ଦିନ ତଳର କଥା । ବୋଧହୁଏ ନବମ ଶ୍ରେଣୀରେ ପଢ଼ୁଥିଲି, ଢେଙ୍କାନାଳ ହାଇସ୍କୁଲରେ । ବର୍ତ୍ତମାନ ଯାହାର ନାଁ ହେଉଛି ବି. ବି. ହାଇସ୍କୁଲ । ସେତେବେଳର ରାଜା ସାହେବଙ୍କ ଉଆସର ରଂଗମହଲରେ ଥିଏଟର ହେଉଥାଏ । ସାମାଜିକ ନାଟକ ନୂଆ ନୂଆ ମଞ୍ଚସ୍ଥ ହେଉଥାଏ । କିଏ ଜଣେ ସାଙ୍ଗ କହିଲି ରଂଗ ମହଲରେ ସିନେମା ଭଳିଆ ଡ୍ରାମା ହେବ । ଯିବା—ଦେଖିବା । ଅତି ଆଗ୍ରହରେ ଗଲୁ । ସ୍କୁଲ ପିଲାଙ୍କ ପାଇଁ ଏବଂ ଅନ୍ୟ କେତେକ ସର୍ବ-ସାଧାରଣଙ୍କ ପାଇଁ ସେତିକି ଜାଗାହେବ । ଦେଖିବାର ସୁବିଧା ମିଳିଥାଏ । ଏହା ଏକ ଜଣାଶୁଣା କଥା । ବୋଧହୁଏ 'ଗାର୍ଲସ୍କୁଲ' ନାଟକ ହେଉଥାଏ, ମନେ ନାହିଁ । ଗୋଟିଏ ଅଙ୍କରେ ବାବି ଓ ମେନାଙ୍କର ପାର୍ଟ ଥାଏ ଏବଂ ଶେଷକୁ ଯେତେବେଳେ ଡ୍ରପ ସିନ୍ ପଡ଼ିଲି ତାହା ଦଉଡ଼ି ଗୋଳମାଳ ହେତୁ ଅଟକିଗଲା । ଆମେ ପିଲାମାନେ ଏହାକୁ ରହସ୍ୟ ମନେକରି ତାଳି ପରେ ତାଳି ମାରିଲୁ । ଯାହା ଶାଳୀନତାର ବହିର୍ଭୂତ । ନାଟକର ବିଶ୍ରାମ ସମୟରେ V. I. P. ସ୍ଥାନରେ ବସିଥିବା ଜଣେ ପ୍ରୌଢ଼ ବ୍ୟକ୍ତି ଚଉକିରୁ ଠିଆ ହେଲେ ଏବଂ ଆମ୍ଭମାନଙ୍କୁ ଉଦ୍ଦେଶ୍ୟକରି କହିଲେ "ମୁଁ ମଧ୍ୟ ତୁମମାନଙ୍କ ପରି ଜଣେ ଛାତ୍ରଥିଲି ଓ ତୁମରି ପରି ନାଚ ତାମସା, ଗୀତର ପ୍ରିୟଥିଲି । କିନ୍ତୁ କଳା ପ୍ରତି ଏ ମମତାର ପ୍ରଦର୍ଶନ କେବେ ଅସୌଜନ୍ୟତାରେ ପରିଣତ ହେବା ଉଚିତ ନୁହେଁ । ବିଶେଷକରି ଗୁରୁଜନଙ୍କ ମେଳରେ ଏବଂ କଳାକାରଙ୍କର ସମ୍ମୁଖରେ ।" ସେ ଦିନର ଏଇ କେଇପଦ କଥା ମୋର କୋମଳ ମନରେ ଯେ ଛାପ ପକାଇଥିଲା ଓ ଯେଉଁ ଆଲୋଡ଼ନ ସୃଷ୍ଟି କରିଥିଲା ତାହା ଆଜି ମଧ୍ୟ ମନେଅଛି । ଉପଦେଶ ଦେଇଥିବା ଏହି ଲୋକଟି ଯେ କାଳୀବାବୁ ଓ ନାଟକର ଲେଖକ ତାହା ପରେ ଜାଣିଲି । ସ୍ୟାଙ୍କୁ ତାଙ୍କୁ ପଚାରି ଏବଂ ନିଜର କୁତକର୍ମ ପାଇଁ ବଡ଼ ମର୍ମାହତ ହୋଇଥିଲି । ତା'ପରେ ଅନେକ ଝଡ଼

ବହିଛି । କେତେ ଭଙ୍ଗା ଗଢ଼ା ହୋଇଛି । ରାଜାଙ୍କ ଉଆସ ରହିଛି ଓ ରଂଗମହଲ ରହିଛି କିନ୍ତୁ ପୂର୍ବପରି ଆଉ କଳାକାରର ସଂଳାପ ବା ମଧୁର ଝଂକାରରେ ମୁଖରିତ ହେଉନି । କଟକରେ ପଢ଼ୁଥିବାବେଳେ ଅନେକଥର ଓଡ଼ିଶା ଥିଏଟରକୁ ଯାଇଛି ଏବଂ ନାଟ୍ୟକାରଙ୍କର ଅନେକ ସଫଳ ସୃଷ୍ଟି ଦେଖିବାର ସୌଭାଗ୍ୟ ଲାଭ କରିଛି । କଲେଜ ଜୀବନ ପରେ ନିଜର କର୍ମକ୍ଷେତ୍ରରେ ମଧ୍ୟ ଲେଖକଙ୍କର ଅତି ନିକଟ ସଂସ୍ପର୍ଶରେ ଆସିଛି ଏବଂ ସାନ୍ନିଧ୍ୟ ଲାଭ କରିଛି । ସାହିତ୍ୟିକ ଲେଖକ ଓ କଳା-କାରଙ୍କୁ ମୁଁ କେବଳ ସେହି ରୂପରେ ଦେଖିବାକୁ ଚାହେଁ । ଏମାନେ ମନୁଷ୍ୟକୁ ଦେବତାରେ ବା ଦେବତାକୁ ଦାନବରେ ପରିଣତ କରିବାରେ କିଛି ବଡ଼ ପଣିଆ ନାହିଁ । କିନ୍ତୁ ମନୁଷ୍ୟକୁ ମନୁଷ୍ୟ ଭାବରେ ଗଢ଼ି ଥୋଇ-ବାରେ ଏମାନଙ୍କର ସୃଜନ ଶକ୍ତି ଯେଉଁ ପରାକାଷ୍ଠା ଦେଖାଏ ତାହା ମୁଁ ଅନୁଭବ କରିଛି, କବିଚନ୍ଦ୍ରଙ୍କ ଠାରେ । ଚରିତ୍ରର ନିଖୁଣ ଚିତ୍ର ଆଙ୍କି-ବାରେ, ଭାବର ନିବିଡ଼ତାରେ, ଗୀତର ଝଙ୍କାର ତୋଳିବାରେ ଉତ୍କଳ ଭାରତର ଯେଉଁ କେତେକ ସ୍ରଷ୍ଟାଙ୍କ ଲେଖନୀ ସଫଳ ହୋଇଛି, ସେମାନଙ୍କ ମଧ୍ୟରେ କବିଚନ୍ଦ୍ର ଅଗ୍ରଗଣ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ । "ହୃଦ ପଛେ ଜଳୁ ଦାରୁଣ ଅନଳେ ଜଳ ଦାନେ ମେଘ ବାଧ୍ୟ" ପରି ଯେଉଁ କେତେକ ଲେଖକ, କବି, ନାଟ୍ୟକାର ନିରପେକ୍ଷ ରହି ସତ୍ୟ, ଶିବ, ସୁନ୍ଦରର ପୂଜାରେ ନିଜକୁ ତିଳତିଳ କରି ନିକ୍ଷେପିତ କରିଛନ୍ତି, ସେମାନଙ୍କ ମଧ୍ୟରେ କବିଚନ୍ଦ୍ର ଅଗ୍ରଗଣ୍ୟ । ଭଗବାନ ଏ ରାଜ୍ୟକୁ ଗୁରୁ ହାସ୍ୟମୟୀ ଓ ଲାସ୍ୟମୟୀ କରି ସୃଷ୍ଟି କରିଛନ୍ତି । ତାଙ୍କ ଠାରେ ପ୍ରାର୍ଥନା ଏ ଦେଶ କଳାର ପୂଜାରୀ ମାନଙ୍କୁ ଧନ୍ୟ କରନ୍ତୁ, ସେହିଭଳି ଉନ୍ନତ ମନା ବିଶ୍ୱପ୍ରେମୀ କରନ୍ତୁ । ଯାହା ବଳରେ ଏ ଦେଶର ଠାକୁର ରଜା ଜଗନ୍ନାଥଙ୍କ ଠାରେ ପ୍ରାର୍ଥନା କରିଥିଲେ "ହେ ନାଥ ! ତୁମର ଏ କୀର୍ତ୍ତିସ୍ତମ୍ଭ ଏ ବଡ଼ ଦେଉଳକୁ ଗଢ଼ିଥିବାର ବାହା ବା ନେବାପାଇଁ ମୋ କଣରେ କେହି ନଥାନ୍ତୁ ।"

---

# ମୋ ଅନୁଭୂତିରୁ ପଦେ

**ଶ୍ରୀ ଗୌରକିଶୋର ମହାନ୍ତି**

ଆଜିକି ପ୍ରାୟ ୨୦ ବର୍ଷ ତଳର କଥା । ମୁଁ ଆମ ଗାଁରେ ପଞ୍ଚମ ଶ୍ରେଣୀରେ ପଢ଼ୁଥିଲି । ବେଳୁ ଗୀତ ପ୍ରତି ମୋର ଖୁବ୍ ଆଗ୍ରହ । କିଏ କେଉଁଠି ଗୀତ ବୋଲିଲେ ତାକୁ ଯେ କୌଣସି ପ୍ରକାରେ ହେଉ ସଂଗ୍ରହ କରି ନିଜ ଖାତାରେ ଲେଖି ରଖିବା ଓ ତାକୁ ଗାଇବା ଥିଲା ସେତେବେଳେ ମୋର ଏକ ପ୍ରକାର ନିଶା । ଏମିତି କେତେଦିନ ପରେ ଆମ ସ୍କୁଲକୁ ନୂଆ ହୋଇ ଜଣେ ହେଡ୍‌ପଣ୍ଡିତ ଆସିଲେ । ତାଙ୍କର ବି ଗୀତ ଗାଇବାରେ ଟିକିଏ ପ୍ରବୃତ୍ତି ଥାଏ । ତାଙ୍କ ଠାରୁ ଗୀତ ଖାତାଟି ମାଗି ନେଇ ମୋ ଖାତାରେ ତାଙ୍କ ଖାତାରେ ଥିବା ଗୀତ ଗୁଡ଼ିକ ଲଗିପଡ଼ି ଉତ୍ତାରି ନେଲି । ସେଗୁଡ଼ିକ ମଧ୍ୟରେ ଗୋଟିଏ ଗୀତ, ଯାହାକି ମୋତେ ସବୁଠୁ ବେଶୀ ଆନନ୍ଦ ଦେଇଥିଲା ଓ ମନରେ ଛାପ ପଡ଼ିଲା ପରି ରହିଗଲା । ସେ ଗୀତଟି ହେଉଛି—

"କାବେରୀ ସେପାରି ବାଳି
　　କିଏ ତୁମେ କହ ଆସିଲେ ଠାକୁର
　　　　ନେଲ ମୋର ପୂଜା ଥାଳି ।"...

ପରେ ଜାଣିଲି ସେଇ ଦରଦଭରା ଗୀତର ଗୀତିକାର ହେଉଛନ୍ତି କବିଚନ୍ଦ୍ର କାଳୀଚରଣ । ତାଙ୍କର ଅନ୍ୟତମ ଶ୍ରେଷ୍ଠକୃତି 'ଅଭିଯାନ' ନାଟକର ଏ ଗୀତଟି । ମନରେ କି ଏକ ପ୍ରବଳ ଉତ୍କଣ୍ଠା ଥାଏ ତାଙ୍କର ଟିକିଏ ସାନ୍ନିଧ୍ୟ ଲଭ ପାଇଁ । ସୁଯୋଗ ଅପେକ୍ଷାରେ ଥାଏ । ଦିନ ଠିକ୍ ମନେ ପଡ଼ୁନି, କୌଣସି ଏକ ଗୋଧୂଳି ସନ୍ଧ୍ୟାରେ କାଳୀବାବୁଙ୍କ ସହିତ ମୋର ପ୍ରଥମ ସାକ୍ଷାତ । ନିଜକୁ କୃତାର୍ଥ ମଣିଲି, ସେଦିନ ଜଣେ ମହତ୍ ବ୍ୟକ୍ତିଙ୍କ ସଙ୍ଗେ ଦି ପଦ କଥାବାର୍ତ୍ତା ପାଇଁ । ସେହି ପହିଲୁ ଦେଖାରେ ସେ ମୋତେ ନିଜର କରିନେଲେ । ଯେପରି ବହୁ ଦିନରୁ ଚିହ୍ନା-ପରିଚିତ ।

କେତେ ବର୍ଷ ତଳର ଘଟଣା । ପ୍ରଥମ କରି ମୁଁ ଗୋଟିଏ ଗ୍ଲେଟ କବିତା ଲେଖିଥାଏ । କବିତାଟିର ନାଁ 'ବାପୁଜୀ ସ୍ମରଣେ' । ତା'ର ସଂଶୋଧନ ପାଇଁ ମୁଁ ସଭୟରେ ତାଙ୍କୁ କବିତାଟି ଦେଖାଇଲି । କବିତାର ପ୍ରଥମ ଧାଡ଼ି ଦେଖି ଦେଖି ସେ ମୋତେ ପ୍ରଶ୍ନଟି ପଗ୍ଚାରିଲେ— "ଭକ୍ତି-ଅର୍ଘ୍ୟ କ'ଣ କିଛି ତେଲ ବା ଘିଅ ଯେ ତାହା ଢଳାଯାଏ ?" ହଠାତ୍ ତାଙ୍କର ଏ ପ୍ରକାର ପ୍ରଶ୍ନରେ ପ୍ରଥମେ ମୁଁ ଅପ୍ରତିଭ ଓ ହତବାକ୍ ହୋଇଗଲି । କିଛି ଉତ୍ତର ନ ଦେଇ ନୀରବ ରହିବାରୁ ସେ ମୋତେ ଆଦରରେ ପାଖକୁ ଡାକି ବୁଝାଇ ଦେଇ କହିଲେ "ଅର୍ଘ ଢଳାଯାଏ ନାହିଁ, ଅର୍ପଣ କରାଯାଏ ।" ପରେ ପରେ ସେ ଏହିପରି ଅନ୍ୟଧାଡ଼ି ଗୁଡ଼ିକ ସଂଶୋଧନ କରି ମୋର ଲେଖାର ମୌଳିକ ତ୍ରୁଟି ସମ୍ବନ୍ଧରେ ସଚେତନ କରାଇ ଯେଉଁ ପ୍ରାରମ୍ଭିକ ଉପଦେଶ ଦେଲେ ଇଂରାଜୀ ଭାଷାରେ First impression last long ପରି ତାହା ମୋର କେବେ ଭୁଲି ହେବ ନାହିଁ । ତା'ପରେ ଯେତେବେଳେ ଯାହା ସଂଶୋଧନ କରିଛନ୍ତି ସେତେବେଳେ ସେ ପ୍ରଥମରୁ ମୋତେ କହନ୍ତି—"ଏହି ଯାଗାରେ କ'ଣ ରହିଲେ ଠିକ୍ ହେବ, ତାହା ନିଜେ କହ, ନହେଲେ ଅଭ୍ୟାସ ହେବ କିପରି ?" ପରେ କିନ୍ତୁ ସେ ତାହା ଅନେକ ଅଂଶରେ ଠିକଣା କରି ଦିଅନ୍ତି ।

ସବୁ ସମୟରେ ଲକ୍ଷ୍ୟ କରିଛି ଯେ, କୌଣସି ଗୋଟିଏ କବିତା, ପ୍ରାର୍ଥନା ବା ବନ୍ଦନା ମୂଳକ ଗାନ ରଚନା କରି ତାକୁ ସଂଶୋଧନ କରିବା ସମୟରେ ସେ ପ୍ରତିଟି ଶବ୍ଦ ପାଇଁ ବହୁ ସମୟ ଏବଂ ବହୁ ଥର ଧୈର୍ଯ୍ୟର ସହ ଗମ୍ଭୀର ଭାବରେ ଚିନ୍ତାକରି ତା'ପରେ ଯାଇ ତାହା ମନୋନୀତ କରନ୍ତି । ଏହାର କାରଣ ସମ୍ବନ୍ଧରେ ସେ ସବୁବେଳେ କହନ୍ତି-"କବିତା ବା ଅନ୍ୟ କିଛି ଲେଖିଲା ବେଳେ ତୁମେ ହେଉଛ ଲେଖକ । ତାହା ୨ୟ ଥର ସଂଶୋଧନ କଲାବେଳେ ତୁମେ ସେତେବେଳେ ନିଜକୁ ଜଣେ ପାଠକ ବା ସମାଲୋଚକ ଆସନରେ ବସାଇବ । ନହେଲେ ତାହା କବିତା ନୁହେଁ କି ରଚନା ନୁହେଁ । ରଚନାରେ ନିଛକ ଆଞ୍ଚଳିକ ଶବ୍ଦର ବ୍ୟବହାର ହେଉଛି କାଳୀ-ବାବୁଙ୍କର ଏକ ବିଶେଷତ୍ୱ । ତାଙ୍କ କବି ପ୍ରତିଭାର ଅନ୍ୟ ଏକ

ବିଶେଷତ୍ୱ ଏହି ଯେ, ସେ ଯେଉଁ ମୁହୂର୍ତ୍ତରେ କଲମ ଧରି କବିତା ରଚନା କରିବାକୁ ବସନ୍ତି, ସେହି ମୁହୂର୍ତ୍ତରେହିଁ ସେ ତାହା ସମ୍ପୂର୍ଣ୍ଣ କରି ଦେଇ ଥାଆନ୍ତି । ସମୟରେ ମୁଁ ତାଙ୍କୁ ପଚାରିଛି—ଏପରି ଶବ୍ଦ ନ ଦେଇ ଟିକିଏ ସାହିତ୍ୟିକ ଭାବ ଓ ଭାଷା ଦେଲେ କ'ଣ ଚଳନ୍ତା ନାହିଁ ? ଉତ୍ତରରେ ସେ କହନ୍ତି "ଯାହା ଲେଖିବାକୁ ଯିବ, ତାହା ଯଦି ଅପାଠୁଆ ସାଧାରଣ ଲୋକର ମନକୁ ଛୁଇଁ ନ ପାରିଲା ସେ ଯଦି ତାର ଭିତର ଭାବକୁ ବୁଝି ନ ପାରିଲା, ତେବେ ତାହାର ମୂଲ୍ୟ କିଛି ନାହିଁ, ଯାହା ଲୋକ ମୁଖର ଭାଷା, ତାହା ଅବଶ୍ୟ ଧେବାକୁ ପଡ଼ିବ । କବି ବା ଲେଖକ ଯେ କୌଣସି ଠାରୁ ଭାବ ଟିକିକ ଗ୍ରହଣ କରି ତାହା ସାଧାରଣ ଭାଷାରେ ଅପରକୁ ବଖାଣି ବସେ । ସେଥିପାଇଁ ସମସ୍ତଙ୍କର ମୁକ୍ତି ଅଛି ସିନା, କିନ୍ତୁ ଏହି ଶ୍ରେଷ୍ଠ ବିଦ୍ୟା ଯୋଗୁ କବି ବା ଲେଖକର ମୋଟେ ମୁକ୍ତି ନାହିଁ ।" ଏହିପରି କେତେ ବହୁମୂଲ୍ୟ ଉପଦେଶ । ବାସ୍ତବିକ୍ ସେଇଥି ପାଇଁ ତ କବି ସମ୍ରାଟ ଓ କବି ସୂର୍ଯ୍ୟଙ୍କ ଛାନ୍ଦ, ଓଡ଼ିଶୀ ଚଂପୂ ପରି କବି ଚନ୍ଦ୍ରଙ୍କ ଲେଖଣୀ ନିଃସୃତ କବିତା ଏବଂ ନାଟକା-ବଳୀ ଆଜି ହୋଇ ପାରିଛି ସର୍ବଜନ ବିଦିତ ଓ ସର୍ବଜନ ଆଦୃତ ।

ଅନେକ ସମୟରେ ସେ ମୋର ସାଧାରଣ ତ୍ରୁଟି ଦେଖି ମୋତେ ବହୁଥର, ଗାଳି ଦିଅନ୍ତି । ପରେ କହନ୍ତି—"ମୁଁ ଏମିତି କହୁଛି ବୋଲି କ'ଣ ଖରାପ ମନେ କରୁଛୁ ? ମୁଁ ଗାଳି ଦେଇ ଭୁଲ ଦେଖାଇ ଦେବିନି ତ ଆଉ କିଏ ଦେଖାଇବ ? —ମୋର ସେତିକି କହିବାର ଅଧିକାର ଅଛି ବୋଲିତ କହିଲି ।" ସତରେ ଅନ୍ତରରେ କି ଗଭୀର ଅକପଟ ଅପତ୍ୟ ସ୍ନେହ !! ସେଇଥି ପାଇଁତ କାଳୀବାବୁ ଆଜି ଓଡ଼ିଶାର ସମସ୍ତଙ୍କର ବାପା, ଅଜା, ନେନେ, ମଉସା—ଯାହାକିଛି କୁହନ୍ତୁ । ଗୋଟିଏ କଥାରେ କହିବାକୁ ଗଲେ କାଳୀବାବୁ ସମସ୍ତଙ୍କର ଏବଂ ସମସ୍ତେ କାଳୀବାବୁଙ୍କର । ତାଙ୍କର ସେହି ମହାନ୍ ପ୍ରତିଭା ସମ୍ପର୍କରେ ଯିଏ ଆସିଛି, ତାଙ୍କଠାରୁ ସେହି ସ୍ନେହ ଭରା ଆଶୀର୍ବାଦ ଯିଏ ପାଇଛି, ସେ ତାହା କେବେହେଲେ ଭୁଲି ପାରିବ ନାହିଁ । ନିଜର ଦୈନନ୍ଦିନ କର୍ତ୍ତବ୍ୟ କର୍ମରେ ଯେତେ ଗଭୀର ମନୋନିବେଶ କରିଥାନ୍ତୁ ନା କାହିଁକି, ଯିଏ ଆଗନ୍ତୁକ ତାଙ୍କ ନିକଟକୁ ଯିବ, ସେ କେବେ ତାଙ୍କୁ

ନିର୍ଭଣ କରି ଫେରାଇ ଦେବାର ମୋ ଦୃଷ୍ଟିରେ ପଡ଼ନାହିଁ । ଅବସର ସମୟରେ ମୁଁ ଯାହା ଟିକିଏ ଲେଖାଲେଖି କରିଥାଏ, ତାହାର ମୂଳରେ ରହିଛି କାଳୀବାବୁଙ୍କର ଉତ୍ସାହ ଦାୟକ ପ୍ରେରଣା, ପ୍ରୋତ୍ସାହନ ଏବଂ ଉପଦେଶ ମୂଳକ ତାଗିଦ୍ । କଳିଙ୍ଗ-ଭାରତୀର ସମ୍ପାଦକଙ୍କ ଭାଷାରେ କହିବାକୁ ଗଲେ—"କାଳୀଚରଣଙ୍କ ଘରେ ବାପରେ, ଧନରେ ! କହି ଲୋକଙ୍କୁ ନିଜର କରି ଓଡ଼ିଆ ସାହିତ୍ୟରେ ଭବିଷ୍ୟତ ବଂଶଧର-ମାନଙ୍କୁ ତିଆରିବ । ତାଙ୍କ ପରି ବ୍ୟକ୍ତିତ୍ୱ ଓଡ଼ିଶାରେ ବିରଳ ।"

ଆଜି ତାଙ୍କର ଊନଅଶୀତିତମ ଜୟନ୍ତୀ ଦିବସ । ଶୁଭ ଅବସରରେ ସେ ଆହୁରି ଦୀର୍ଘାୟୁ ହୋଇ ବିକାଶୋନ୍ମୁଖୀ ଜାତିର କଳା, ସାହିତ୍ୟ ଓ ସଂସ୍କୃତିକୁ ଉନ୍ନତ ପଥରେ ଆଗେଇ ନିଅନ୍ତୁ ଏବଂ ଆମକୁ ଏହିପରି ପ୍ରେରଣା ଓ ସସ୍ନେହ ଆଶୀର୍ବାଦ ଦେଉଥାନ୍ତୁ—ଆମର ଠାକୁରଙ୍କ ପାଖରେ ପ୍ରାର୍ଥନା ।

---

## ଭାତ ହାଣ୍ଡିରୁ ଗୋଟିଏ 'ଭାତ' ଓ କାଳୀଚରଣ

**ବଭୂତି ପଟ୍ଟନାୟକ**

କାଳୀଚରଣଙ୍କୁ ଦେଖିବା ଆଗରୁ ମୁଁ ଦେଖିଥିଲି ତାଙ୍କ ରଚିତ ନାଟକ "ଭାତ" ; ଆମ ଗାଁରେ । ସେଇ ନାଟକ ଦେଖି ମୁଁ ତାଙ୍କୁ ଜାଣି ଯାଇଥିଲି ।

କାଳୀଚରଣ କିପରି ନାଟ୍ୟକାର ? ସେକଥା ତାଙ୍କୁ ଦେଖିଲେ ଜାଣି ହେବନାହିଁ ; ଏଥିପାଇଁ ତାଙ୍କ ନାଟକ ଦେଖିବାକୁ ହେବ । ସେ ନାଟକର ମର୍ମଭେଦୀ ଭାବବସ୍ତୁକୁ ନିଜ ଭିତରେ ଅନୁଭବ କରିବାକୁ ପଡ଼ିବ । ତାହାହେଲେ କ୍ରମଶଃ ତାଙ୍କୁ ବୁଝି ହେବ ।

'ଭାତ' ନାଟକ ଆମେ ସବୁ ଗ୍ରାମରେ କୌଣସି ବର୍ଷ ଏକ ପୂଜା ଛୁଟିରେ ଅଭିନୟ କରୁଥିଲୁ । ସୌଖୀନ ଅଭିନୟ । ତାଙ୍କ ଅନେକ

ନାଟକ ଭିତରୁ ଏ ନାଟକଟି ବହୁ ଯାଇଥିଲା ଏଇଥି ପାଇଁ—ଏଥିରେ
ଭରି ରହିଥିଲା ଏକ ସମାଜବାଦୀ ଚେତନା···ଶୋଷଣ, ଅତ୍ୟାଚାର
ବିରୁଦ୍ଧରେ ଯୁଦ୍ଧ ଘୋଷଣା । ଏହାର ଅନ୍ୟ ଏକ ବିଶେଷ ଆକର୍ଷଣ
ଥିଲା ଏଥିରେ ସନ୍ନିବିଷ୍ଟ ସଙ୍ଗୀତ "ରବି ଢୁଳିଲା ଆସି କାନ୍ଥ ତଳକ"
"ମୁଠେ ଭାତ···ଦିଅ ଭାତ" "ଫୁଟିଲୁ ଯେବେ ଫୁଲ, ପାଖୁଡ଼ା ଶେଜ
ସାକ୍ଷୀ"···ପ୍ରଭୃତି ଯାହା ରିହରସାଲ୍ ବେଳଠାରୁ ଗାଁଆର ବହୁ କିଶୋର
ଯୁବକଙ୍କ କଣ୍ଠରେ ଅହରହ ଅନୁରଣିତ ହୋଇଥିଲା ।

କାଳୀଚରଣଙ୍କୁ ଦେଖିଲେ 'ଭାତ' ନାଟକ ଅଭିନୟର
ଅନେକ ବର୍ଷ ପରେ । ସେତେବେଳକୁ ତାଙ୍କର 'ଅଭିଯାନ' 'ରକ୍ତ ମନ୍ଦାର'
'ଦଶଭୁଜା' ଇତ୍ୟାଦି ଅନେକ ନାଟକ ଦେଖି ସାରିଥିଲି । କିନ୍ତୁ ଏ ସବୁ
ନାଟକ ଦେଖି ସାରିଲା ପରେ ତାଙ୍କର ଯେଉଁ ଭାବମୂର୍ତ୍ତି ମନ ଭିତରେ
ତିଆରି ହୋଇଯାଇଥିଲା ; ସାମ୍ନାସାମ୍ନି ହୋଇଗଲା ପରେ ସେ ଭାବ
ମୂର୍ତ୍ତିର ରଙ୍ଗ ଟିକିଏ ବିବର୍ଣ୍ଣ ହୋଇଗଲା । କାଳୀଚରଣ ସ୍ନେହୀ, ଶାନ୍ତ
ଜଣେ ଅନ୍ତରଙ୍ଗ ମଣିଷ । 'ଫଟାଭୂଇଁ' 'ଭାତ' ପ୍ରଭୃତିରେ ଯେଉଁ
ବିଦ୍ରୋହର ସ୍ୱର, ବିପ୍ଳବର ଆଗ୍ନେୟ ସ୍ଫୁଲିଙ୍ଗ ହୃଦୟକୁ ଉତ୍ତପ୍ତ କରି-
ଦିଏ ; ସେ ଉତ୍ତାପର ଚିହ୍ନବର୍ଣ୍ଣ ତାଙ୍କର ମାର୍ଜିତ, ସୁରୁଚିସମ୍ପନ୍ନ
ବ୍ୟକ୍ତିତ୍ୱରେ ନାହିଁ । ତାଙ୍କ ନାଟକରେ ସୂର୍ଯ୍ୟର ଦୀପ୍ତି ; ତାଙ୍କ
ବ୍ୟକ୍ତିତ୍ୱରେ ଚନ୍ଦ୍ରର ଶୀତଳ କାନ୍ତି ; ସେଇଥିପାଇଁ ବୋଧହୁଏ ସେ
କବିଚନ୍ଦ୍ର !

ଓଡ଼ିଆ ନାଟକର ଇତିହାସରେ କବିଚନ୍ଦ୍ର କାଳୀଚରଣ
ପଟ୍ଟନାୟକ ଜଣେ ନୂତନ ଯୁଗସ୍ରଷ୍ଟା ନାଟ୍ୟକାର । ଭିକାରୀଚରଣ
—ଅଶ୍ୱିନୀ କୁମାର—ଗୋଦାବରୀଶ ପ୍ରମୁଖ ନାଟ୍ୟକାର ଗଣ ଓଡ଼ିଆ
ନାଟକରେ ଯେଉଁ ଧାରା ପ୍ରବାହିତ କରାଇଥିଲେ ; ସେ ସ୍ରୋତକୁ ଓଲଟ
ପାଲଟ କରି ଦେଇଥିଲେ କାଳୀଚରଣ । ଗୀତି ସୁଲଳିତ ସଂଳାପ
ସଂଯୋଜନା, ଦୃଶ୍ୟ ସଜ୍ଜା, ଓଡ଼ିଶୀ ସଂଗୀତର ସମାବେଶ—ନାଟକର
ଆଙ୍ଗିକରେ ତାଙ୍କର ଏହି ସବୁ ମୌଳିକ ପରିବର୍ତ୍ତନ କେବଳ ଓଡ଼ିଆ
ନାଟକକୁ ରଙ୍ଗମଞ୍ଚରେ ଅଧିକ ଲୋକପ୍ରିୟ କରିବାରେ ସହାୟତା କରି
ନ ଥିଲା, ମଞ୍ଚ ପାଇଁ ରଚିତ ନାଟକକୁ ଏକ ଉଚ୍ଚମାନର ସାହିତ୍ୟ
ପର୍ଯ୍ୟାୟକୁ ଉନ୍ନୀତ କରିବାରେ ସମର୍ଥ ହୋଇଥିଲା । ନାଟକୀୟ ଆଙ୍ଗିକ

ପ୍ରୟୋଗରେ ନୂତନତ୍ୱ କାଳୀଚରଣଙ୍କୁ ତାଙ୍କର ପୂର୍ବବର୍ତ୍ତୀ ଓ ସମସାମୟିକ ନାଟ୍ୟକାରମାନଙ୍କଠାରୁ ଯେ ଅଲଗା କରି ଛିଡ଼ାଇ ଦେଇଥିଲା ତା ନୁହେଁ; ନାଟକର କଥାବସ୍ତୁ ଉପସ୍ଥାପନାରେ ତାଙ୍କର ସମାଜବାଦୀ ଏବଂ ଜାତୀୟତାବାଦୀ ଦୃଷ୍ଟିକୋଣ ସେ କାଳରେ ନାଟକ ପ୍ରତି ଆସକ୍ତିବିହୀନ ବହୁ ତରୁଣଙ୍କୁ ରଙ୍ଗମଞ୍ଚ ଭିତରକୁ ଯୋର କରି ଟାଣି ନେଇଥିଲା ।

ହାଣ୍ଡିରୁ ଭାତ ଗୋଟିଏ ଚିପିଲେ ତାହା ଆହାର ଉପଯୋଗୀ ହୋଇଛି କି ନାହିଁ ଯେପରି ଜଣା ପଡ଼ିଯାଏ ; କାଳୀଚରଣଙ୍କ ନାଟକମାନଙ୍କ ଭିତରୁ କେବଳ 'ଭାତ'କୁ ଚିହ୍ନିଲେ ତାଙ୍କର ନାଟକର ସଫଳତା ସେହିପରି ଧରା ପଡ଼ିଯାଏ ।

୧୯୪୩ ମସିହାରେ ଓଡ଼ିଶାରେ ଯେଉଁ ଦୁର୍ଭିକ୍ଷ ପଡ଼ିଥିଲା ; ତାହାର ପୃଷ୍ଠଭୂମିରେ ସାମାଜିକ ନାଟକ 'ଭାତ' ରଚିତ । ଏ ସମ୍ପର୍କରେ ନାଟ୍ୟକାର ପ୍ରଥମ ଅଙ୍କ ତୃତୀୟ ଦୃଶ୍ୟରେ ଜମିଦାର ପୁତ୍ର ଜୟୀ ଓ କନ୍ୟା ବିଜୟାର କଥୋପକଥନ ଭିତରେ ସେଇ ସମୟର ଚିତ୍ର ଅଙ୍କନ କରିଛନ୍ତି ।

"ବିଜୟା– କଅଣ ପଢୁଥିଲ ଶୁଣେ । ଗୋଟେ କୋଉ କାଳର ପୁରୁଣା କାଗଜ ।

ଜୟୀ —ପୁରୁଣା କାଗଜ ? ୨୭ ତାରିଖ ସେପ୍‌ଟେମ୍ବର ୧୯୪୩ । ନିଜେ ଦେଖିତ, ପୁରୁଣା ହେଲା ?

ବିଜୟା —ହେଲା ବା କଅଣ ଅଛି ସେଥିରେ ? ଇମିତି କି Interesting ଖବରଟା ଅଛି ଶୁଣେ ?

ଜୟୀ —ଓଡ଼ିଶାରେ ଅନାହାରରେ ମୃତ୍ୟୁ । Food Problem ଭାତ, ଭାତ, ଭାତର Question."

ସମସ୍ୟାଟି ଏହିପରି ଭାବରେ ଉପସ୍ଥାପିତ କରିସାରି କାଳୀଚରଣ ଜାତୀୟ ଜୀବନର ଏଇ ଦୁର୍ବିପାକରେ ଜମିଦାର, ସେମାନଙ୍କର ଗୁମାସ୍ତା କିପରି ନିର୍ଦ୍ଦୟ, ନିରନ୍ନ ପ୍ରଜାମାନଙ୍କ ଉପରେ ଖଜଣା, ମାଗୁଣି ଆଦାୟ ପାଇଁ ଅତ୍ୟାଚାର କରୁଥିଲେ ତାର ନଗ୍ନ ଚିତ୍ର ଅଙ୍କନ କରିଛନ୍ତି । ଜମିଦାର ଶୋଷଣର ପ୍ରତୀକ ହେଲାବେଳେ ତାଙ୍କର ପୁତ୍ର, କନ୍ୟା ପ୍ରଜାମାନଙ୍କ ପ୍ରତି ସହାନୁଭୂତିଶୀଳ ଚରିତ୍ର ଭାବରେ ଚିତ୍ରିତ ହୋଇଛନ୍ତି । ଜୟୀର ଅନ୍ତରଙ୍ଗ ବନ୍ଧୁ ଅନନ୍ତ ଅତ୍ୟାଚାରିତ ପ୍ରଜାମାନଙ୍କ ସଂଗଠକ

ଭାବରେ ଶୋଷଣ ବିରୋଧୀ ଅଭିଯାନର ନାୟକ ହୋଇଛନ୍ତି । ଅନନ୍ତ ପ୍ରତି ବିଜୟୀଙ୍କ ଅନୁରକ୍ତ ଏବଂ ଅତ୍ୟାଗ୍ରହୀତ ପ୍ରଜା ରଘୁର କନ୍ୟା ରମା ପ୍ରତି ଜୟୀର ଆସକ୍ତି ; ଭାତ ନାଟକର ମୂଳ କଥାବସ୍ତୁକୁ ଏକ ଭିନ୍ନ କେନ୍ଦ୍ରବିନ୍ଦୁ ଆଡ଼କୁ ଟାଣି ନେଇଛନ୍ତି । ଏଠାରେ ଶ୍ରେଣୀ ସଂଘର୍ଷର ଚିତ୍ର ନାହିଁ ; ଅଛି ଶ୍ରେଣୀ ସମନ୍ୱୟର ଚିତ୍ର । ବିଦ୍ରୋହର ବାଣୀ ଭାତ ନାଟକରେ ଅତ୍ୟାଗ୍ରହୀତ କଣ୍ଠରୁ କେବଳ ଉଚ୍ଚାରିତ ହୋଇନାହିଁ ; ଶୋଷକ ଶ୍ରେଣୀ ମଧ୍ୟରେ ହିଁ ଶୋଷିତ ପ୍ରତି ସମବେଦନାର ସ୍ୱର ଉଦ୍ବେଳିତ ହୋଇଛି ।

ଭାରତ ବର୍ଷରେ ଏହି ଶ୍ରେଣୀ-ସଂଘର୍ଷ ଓ ଶ୍ରେଣୀ-ସମନ୍ୱୟ ସମାନ୍ତରାଳ ଭାବରେ ଗତି କରିଛି । ଏହା ଏକ ଐତିହାସିକ ସତ୍ୟ । ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ ଶିଳ୍ପବିପ୍ଳବ ଫଳରେ ସର୍ବହରା ଓ ଶୋଷକ ଶ୍ରେଣୀ ମଧ୍ୟରେ ଯେପରି ସିଧା ସଳଖ ଭେଦର ଗାର ଟାଣିବା ସମ୍ଭବ ; କୃଷିପ୍ରଧାନ ଭାରତବର୍ଷରେ ତାହା ସମ୍ଭବ ନୁହେଁ । ସେଥିପାଇଁ ପାଶ୍ଚାତ୍ୟ ଦେଶରୁ ଆମଦାନୀ କରାଯାଇଥିବା ଶ୍ରେଣୀ-ସଂଘର୍ଷ ସଂପୂର୍ଣ୍ଣ ଭାବରେ ଏ ଦେଶରେ ସଫଳ ହୋଇନାହିଁ । 'ଭାତ' ନାଟକରେ ନାଟ୍ୟକାର କାଳୀଚରଣ ନିଜେ, ଦୁର୍ଭିକ୍ଷ ପ୍ରପୀଡ଼ିତ ପ୍ରଜାମାନଙ୍କ ଦାବୀ ହାସଲ ପାଇଁ ବିପ୍ଳବୀ ଅନନ୍ତର ସଂଗଠନ ଶକ୍ତି ଉପରେ ନିର୍ଭର ନ କରି, ଜୟୀ ଓ ବିଜୟୀର ସହାନୁଭୂତି, ଅବଶେଷରେ ଜମିଦାରଙ୍କ ହୃଦୟ ପରିବର୍ତ୍ତନ ଉପରେ ଆସ୍ଥା ସ୍ଥାପନ କରିଛନ୍ତି ।

କୃଷିଭିତ୍ତିକ ସମାଜ ବ୍ୟବସ୍ଥାରେ ଭୂମିହୀନଙ୍କୁ ଜମିଦାର ଯେପରି ଶୋଷଣ କରେ, କୃଷି ଶ୍ରମିକକୁ ଦଶ ବାର ଏକର ଭୂମିଥିବା ଚାଷୀ ମଧ୍ୟ ସେହିପରି ଶୋଷଣ କରେ । ସେଥିପାଇଁ 'ଭାତ' ନାଟକରେ ରଘୁର କନ୍ୟା ରମା ପ୍ରତି ଜମିଦାର ପୁତ୍ର ଜୟୀର ସହାନୁଭୂତି ପ୍ରକଟିତ ହୋଇଥିବା ବେଳେ ଜମିଦାରଙ୍କ ଭୃତ୍ୟ ଦାମାର ତା ପ୍ରତି ବିଦ୍ୱେଷ ଓ ଈର୍ଷାପ୍ରକାଶିତ ହୋଇଛି । ଆମର ଶ୍ରେଣୀ-ବିଭକ୍ତ ସମାଜ ଜୀବନର ଏହି ଦୁର୍ବଳତା ପ୍ରତି କାଳୀଚରଣ ଅଙ୍ଗୁଳି ନିର୍ଦ୍ଦେଶ କରି ନିଜର ଗଭୀର ଅନ୍ତର୍ଦ୍ଦୃଷ୍ଟିର ପରିଚୟ ଦେଇଛନ୍ତି ।

କାଳୀଚରଣଙ୍କ ନିଜର ସହାନୁଭୂତି ସବୁବେଳେ ନିପୀଡ଼ିତ, ନିର୍ଯ୍ୟାତିତ ଲୋକଙ୍କ ପ୍ରତି ପ୍ରକାଶ କରି ଆସିଛନ୍ତି । ଦେଶୀ, ବିଦେଶୀ

ସବୁ ଶ୍ରେଣୀସ୍ଥ ଲେଖକ ପ୍ରତି ତାଙ୍କର ଘୃଣା ପ୍ରାୟ ସବୁ ନାଟକରେ ପ୍ରକଟିତ ହୋଇଛି । 'ପଟାଭୂଇଁ'ରେ ବିଦେଶୀ ବଣିକ ଇଂରେଜ ସରକାରଙ୍କ ପ୍ରତି ତାଙ୍କର ତୀବ୍ର ଘୃଣା ଯେପରି ପ୍ରକାଶିତ, 'ଭାତ' ନାଟକରେ ସେହିପରି ଜମିଦାର ଶୋଷକ ଶ୍ରେଣୀ ପ୍ରତି ତାଙ୍କର ବିରୋଧ-ବାଣୀ ଉଚ୍ଚାରିତ । ସମକାଳୀନ ସମାଜ ଜୀବନର ଜ୍ୱଳନ୍ତ ସମସ୍ୟାକୁ କଞ୍ଚାମାଲ୍ ଭାବରେ ବ୍ୟବହାର କରି ନାଟକ-ଶିଳ୍ପର ଶ୍ରୀବୃଦ୍ଧି ସାଧନ କରୁଥିବା ହେତୁ ଓଡ଼ିଆ ନାଟକର ଇତିହାସରେ ସେ ଯୁଗାନ୍ତର ଆଣି ପାରିଛନ୍ତି ।

ନାଟକର ଧର୍ମ ସମ୍ପର୍କରେ ସେ 'ଭାତ' ନାଟକରେ ଜୟୀ ମୁହଁରେ କହିଛନ୍ତି, "ଷ୍ଟେଜ୍ ଦିଏ ଦେଶକୁ, ଜାତିକୁ ଭାଷାକୁ ଜୀବନ । କିନ୍ତୁ ଏଇ ସାଜ ପୋଷାକ; ଏଇ ନାଚ ବାଖଣ୍ଡ ନେଇ ନୁହେଁ; ଓଡ଼ିଆର ଜାତୀୟ ଜୀବନ ପାଇଁ ଆହାର ଦରକାର ।"

କବିଚନ୍ଦ୍ରଙ୍କ ନାଟକରେ ଓଡ଼ିଆ ଜାତୀୟ ଜୀବନ ପାଇଁ ରହିଛି ପ୍ରଚୁର ଆହାର । ସମସାମୟିକ ସମାଜ ଜୀବନର ସମସ୍ୟା, ଅନାହାର, ଦାରିଦ୍ର୍ୟ, ବେକାରୀ; ଯେପରି ତାଙ୍କ ନାଟକକୁ ସମସ୍ୟା ବହୁଳ କରିଛି, ଓଡ଼ିଶାର ଅତୀତ ଗୌରବ, ପୁରାଣ ଇତିହାସ ସେହିପରି ତାଙ୍କ ନାଟକରେ ମୂର୍ତ୍ତିମନ୍ତ ହୋଇ ଉଠିଛି । 'ଅଭିଯାନ' 'ଅତିବଡ଼ି ଜଗନ୍ନାଥ ଦାସ' 'ଜୟଦେବ' ପ୍ରଭୃତି ନାଟକରେ, ସେହି ଉତ୍କଳୀୟ ଜାତୀୟ ଭାବନାର ସ୍ୱାକ୍ଷର ଅଙ୍କିତ ହୋଇଛି । କିନ୍ତୁ କବିଚନ୍ଦ୍ରଙ୍କ ଜାତୀୟତା, ଉତ୍କଳୀୟତା ଯୁଦ୍ଧ ନୁହେଁ; 'ପଟାଭୂଇଁ' ନାଟକରେ ସେକଥା ସେ ପ୍ରମାଣିତ କରିଛନ୍ତି । ତେଣୁ ସେ ଓଡ଼ିଶାର କବିଚନ୍ଦ୍ର ହୋଇ ପାରନ୍ତି; କିନ୍ତୁ ସାରା ଭାରତ-ବର୍ଷର ଜାତୀୟ ନାଟ୍ୟକାର । ରଙ୍ଗମଞ୍ଚର ଅଭିନୟ, ସଙ୍ଗୀତରଚନା ଓ, ସ୍ୱରସଂଯୋଜନା; ନାଟକ ରଚନା ଓ ନିର୍ଦ୍ଦେଶନା—ସବୁଥିରେ ସେ ସିଦ୍ଧି ଲାଭ କରିଛନ୍ତି । ତାଙ୍କର ସେହି ସମ୍ମିଳିତ ଶକ୍ତି ବିରଳ-ପ୍ରତିଭା ତାଙ୍କ ନାଟକରେ ସମନ୍ୱିତ ହୋଇଥିବା ଯୋଗୁ ଓଡ଼ିଆ ନାଟକ ରଚନା କ୍ଷେତ୍ରରେ ସେ ଯୁଗସ୍ରଷ୍ଟାର ସମ୍ମାନ ଅର୍ଜନ କରିଛନ୍ତି ।

---

# ମୋର ବାଲ୍ୟ ବନ୍ଧୁ କାଳୀଚରଣ

ଗୋପେନ୍ଦ୍ର କୃଷ୍ଣ ମିଶ୍ର

ଓଡ଼ିଶାର ବିଶିଷ୍ଟ ସାହିତ୍ୟିକ, ନାଟ୍ୟକାର ଓ ସଙ୍ଗୀତଜ୍ଞ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ମୋର ବାଲ୍ୟ ବନ୍ଧୁ । ସେ ଓ ମୁଁ ଏକା ଗାଁ ବାଙ୍କୀ ଟାଉନର ଲୋକ । ତାଙ୍କ ବାପା, ଜେଜେବାପାଙ୍କୁ ମୋର ଦେଖିବା ହେଲା ଦିନୁ ମୁଁ ବାଙ୍କୀରେ ଜମାରଙ୍ଗ, ଯାହା ଟାଉନର ଏକ ଅଂଶ ସେଠାରେ ଦେଖି ଆସୁଥିଲି । କାଳୀଚରଣଙ୍କୁ ପିଲା ଦିନୁ କାଳୀ ବୋଲି ଡାକୁଥିଲି । ସେ ଯେତେବଡ଼ ହେଉନା କାହିଁକି । ଆମେ ଦୁହେଁ ବାଙ୍କୀ ମାଇନର ସ୍କୁଲରେ ଶିକ୍ଷା ଆରମ୍ଭ କରିଥିଲୁ । କାଳୀ ପିଲାଦିନୁ ଧୂନ୍ ଗାଇ ପାରୁଥିଲା । ସେ ସମୟରେ ସ୍କୁଲର ପ୍ରଧାନ ଶିକ୍ଷକ ଜଣେ ଭଲ ବେହେଲା ବାଦକ ଥିଲେ । କାଳୀ ଗୀତ ଗାଉଥିଲା । ସେ ବେହେଲା ବଜାଉ ଥିଲେ । ମୁଁ ମଧ୍ୟ ପିଲାଦିନେ ଗୀତ ଗାଉଥିଲି । ମୋର ବାପା ନିଜେ ସଙ୍ଗୀତ ଚର୍ଚ୍ଚା କରୁଥିଲେ ଏବଂ ଗୋଟିଏ ରାସଦଳ ଗଢ଼ି ତାର ସମୁଦାୟ ବ୍ୟୟ ବହନ କରୁଥିଲେ । କାଳୀ ଓ ମୁଁ ଖୋର୍ଦ୍ଧା ହାଇସ୍କୁଲରେ ପଢ଼ିଲୁ । ସେ ୧୯୧୭ ମସିହାରେ ମାଟ୍ରିକ୍ୟୁଲେସନ ପାସ୍ କଲା ଓ ମୁଁ ୧୯୧୯ରେ ପାସ୍ କଲି । ସେ ମୋ ଠାରୁ ଦୁଇ ବର୍ଷ ବଡ଼ ।

ସେଠାରୁ ଆସି ରେଭେନସା କଲେଜରେ ନାଁ ଲେଖାଇଲା ସତ, ହେଲେ ଅଧିକାଂଶ ସମୟ ସଙ୍ଗୀତ ଚର୍ଚ୍ଚାରେ କଟାଇଲା । ଏହି ସମୟରେ 'କଳାହାଣ୍ଡିଆ ମେଘ' ନାମରେ ଗୋଟିଏ ପୁସ୍ତିକା ପ୍ରକାଶ କଲା । ବିଲେଇ କପାଳକୁ ଶିକା ଛିଣ୍ଡିଲା ଭଳି ଏହି ସମୟରେ ବଙ୍ଗଳାର ଜଣେ ବିଶିଷ୍ଟ ଏସ୍ରାଜ ବାଦକ ସ୍ୱର୍ଗୀୟ ଦ୍ୱିଜେନ୍ଦ୍ର କୃଷ୍ଣ ଦାସ ଅଧିକାରୀ କଟକକୁ ନିମନ୍ତ୍ରିତ ହୋଇ ଆସିଥିଲେ । କାଳୀର ସେ ସଙ୍ଗୀତ ଶୁଣିଲେ । କାଳୀର କବି ପ୍ରତିଭା ଜନ୍ମଗତ । ଛୁଟିରେ ଗାଁକୁ ଆସିଲେ ସେ ତାର ଲିଖିତ ପାଣ୍ଡୁଲିପି ମୋତେ ପଢ଼ାଇ ଶୁଣାଏ—ମୁଁ ମନ୍ତ୍ର ମୁଗ୍ଧ ପରି କେବଳ ଶୁଣେ । ତା ବୋଉ ମୋତେ ନଖୁଆଳ ଆଦୌ ଗୁଡ଼ିଅନ୍ତ

ନାହିଁ । ଆମେ ସ୍କୁଲ ଓ କଲେଜରେ ପଢିଲା ବେଳେ ଗାଁରେ ଷ୍ଟେଜ୍ ବାନ୍ଧି ଥିଏଟର କରୁଥିଲୁ—ଦୁହେଁ ନାରୀ ଭୂମିକାରେ ଅଭିନୟ କରୁଥିଲୁ । ମୋର ଗାଇବାରେ ବଡ଼ ସଉକ ଥିଲା । ହଷ୍ଟେଲରେ ପିଲାମାନେ ମୋତେ 'Nightingale of the College' ବୋଲି ପରିହାସ କରୁଥିଲେ । ସ୍ୱର୍ଗୀୟ ରାମପାଳ ମିଶ୍ରଙ୍କ ପାଖରେ ପାଠ ପଢିବାର ମୋର ଅବକାଶ ମିଳିଥିଲା । ତାଙ୍କ ରଚିତ ହରିଶ୍ଚନ୍ଦ୍ର, ସୀତା ବିବାହ ନାଟକର ଶ୍ରେଷ୍ଠ ଭୂମିକାରେ ମୁଁ ଭାଗ ନେଇଥିଲି ।

ମୁଁ ପାଠ ପଢାରେ ବ୍ୟସ୍ତ ରହି ସଙ୍ଗୀତ ଚର୍ଚ୍ଚା କରି ପାରିଲି ନାହିଁ କିନ୍ତୁ କାଳୀ ସଙ୍ଗୀତ ଚର୍ଚ୍ଚା କରି ପାଠ ପଢ଼ା ଛାଡ଼ି ଦେଲା । ପୁରୀ ଯାଇ ପୁରୀରାଜାଙ୍କ ପାଖରେ କିଛି ଦିନ ରହିବା ସମୟରେ ସେ 'କବିଚନ୍ଦ୍ର' ଉପାଧି ପାଇଥିଲା । ଏହି ସମୟରେ ସେ ଗୋଟିଏ ପ୍ରେସ୍ ସ୍ଥାପନ କରି 'ସଙ୍ଗୀତ ପ୍ରଭା' ନାମକ ଗୋଟିଏ ପତ୍ରିକା ସମ୍ପାଦନ କଲା । ତା'ର ପରବର୍ତ୍ତୀ ଜୀବନ ଘଟଣା ବହୁଳ । ସେ ସମ୍ବନ୍ଧେ ଆଲୋଚନା କରିବା ମୋର ଇଚ୍ଛା ନୁହେଁ । ଓଡ଼ିଶାର ଯେତେ ମଞ୍ଚଶିଳ୍ପୀ ଅଛନ୍ତି ସେମାନଙ୍କ ମଧ୍ୟରୁ ଅଧିକାଂଶ ତା'ର ହାତଗଢ଼ା । ମୋହନ ସୁନ୍ଦର ଗୋସ୍ୱାମୀ ଗୋଟିଏ ରାସଦଳ ଗଢ଼ି ଓଡ଼ିଶାର ପୁରପଲ୍ଲୀ ଓ ଗଡ଼ଜାତ ମାନଙ୍କରେ ସଙ୍ଗୀତ ପରିବେଷଣ କରି ଅର୍ଥୋପାର୍ଜନ କରିଥିଲେ । କିନ୍ତୁ କାଳୀ-ବାବୁଙ୍କର ଥିଏଟର ଦଳ ଯେଉଁ ସଙ୍ଗୀତ ପରିବେଷଣ କରୁଥିଲେ ସେ ଥିଲା କାଳୀବାବୁଙ୍କର ନିଜସ୍ୱ । ଏବେ ମଧ୍ୟ ତାଙ୍କ ଗଢ଼ା ଦୁର୍ଲଭ ଓ ଟିମା (ଅର୍ଥାତ୍ କୃଷ୍ଣ ଓ ସୁଦାମା) ଓଡ଼ିଶାର ଦୁଇଜଣ ବିଶିଷ୍ଟ ମଞ୍ଚଶିଳ୍ପୀ ଭାବେ ପରିଚିତ । ଟିମା ଯେତେବେଳେ ଗାଉଥିଲା ଦର୍ଶକମାନଙ୍କର କରତାଳିରେ ପ୍ରେକ୍ଷାଳୟ କମ୍ପିତ ହୋଇ ଯାଉଥିଲା । ସେ ସ୍ମୃତି ମୋର ଚୀରଦିନ ଅମ୍ଳାନ ହୋଇ ରହିବ । କାଳୀ ଜୀବନଯାକ ସଂଗ୍ରାମ କରି ଓଡ଼ିଶାର ସାହିତ୍ୟ ଓ କଳା କ୍ଷେତ୍ରରେ ବିଶିଷ୍ଟ ସ୍ଥାନ ଅଧିକାର କରିଅଛି । ଜୀବିତରେ ହେଲେ ମଧ୍ୟ ଦେଶ ତା'ର ପ୍ରତିଭାର ପୂଜା କରିଅଛି । ସେ ଓ ମୁଁ ବୁଢ଼ା ହୋଇଗଲୁଣି । ଭଗବାନ ତାର ଶେଷ ଜୀବନ ଶାନ୍ତିମୟ କରନ୍ତୁ ଏହି ମୋର ପ୍ରାର୍ଥନା ।

---

## ......କଳାରେ କାଳାନ୍ତର ସ୍ରଷ୍ଟା......

**ଶ୍ରୀ ରାଜକିଶୋର ରାୟ**

ଆଖି ଦୁଇଟିର ଧାରରେ ସବୁବେଳେ ଅଞ୍ଜନ ବୋଳା ଆଭାସ... ପ୍ରକୃତିଗତ । ବଶୀକରଣର କୁହୁକ ସେ ଆଖି ଦୁଇଟିରେ... କିଏ କଜ୍ଜ୍ୱଳ ରେଖିନାହିଁ ସେଥିରେ... ଆପେ ଉଭୁରିଛି... ବର୍ଣ୍ଣ ଶ୍ୟାମ... ଆଖି ସୁହାଇବା ଶ୍ୟାମ ବର୍ଣ୍ଣ । ଗଳାରେ ମାଳଟିଏ ଲମ୍ବିଥାଏ । ପାଦ ଗୋଟାଏ ଅସଜଡ଼ା ଥିବାରୁ ଚାଲିବା ଭଙ୍ଗୀ ଟିକିଏ ଢଳେଇ ବଙ୍କେଇ... କାହା କାନ୍ଧ ଉପରେ ହାତ, କାହା ପିଠିରେ ସ୍ନେହ... ଥାପଡ଼ା । କଥା ଆରମ୍ଭ ହେଲେ ଖିଅ ଧରିବା ସହଜ ହୁଏନି... କେଉଁ ମର୍ମରେ କାହିଁକି କୁହା ଯାଉଛି, ଶେଷ ବେଳକୁ ଜଣାଯାଏ · ଶେଷରେ ଆନନ୍ଦ ।

କିଛି ନଥିଲା ଓଡ଼ିଶାରେ । କୋଣାର୍କ ଶିଳାରେ ଗୁଡ଼ାଏ ନଟୀ ନାଚୁଥିଲେ, ପଖଉଜ, ମଞ୍ଜୀର, ମର୍ଦ୍ଦଳ । ଚନ୍ଦ୍ରାଲୋକିତ ଚନ୍ଦ୍ରଭାଗା ଶଯ୍ୟାରେ ସେଗୁଡ଼ାକ ପାଷାଣୀଭୂତା, ଜୀଅନ୍ତା ନାଚୁଥିଲେ । ସେପଟେ କୋଣାର୍କ, ଏପଟେ ନୀଳାଚଳ ଧାମ । ଭଗବାନଙ୍କ ପହୁଡ଼ ବେଳେ କିଛି ରସିତ ଲଳିବ ନା ଅନିଦ୍ରା ରହିବେ ସେ ? ଏ ରସ ଢାଳୁଥିଲେ ମାହାରୀମାନେ... ନିତି ପୂଜାର ସେମାନେ ଦାସୀ... ଦେବତାରୁ ଦାସୀ... ଦେବଦାସୀ ।

ସିଆଡ଼େ ବାଙ୍କୀର ଚର୍ଚ୍ଚିକା... ତନ୍ତ୍ରଧ୍ୱେଶ୍ୱ·· ସେଇପଟେ ମହାନଦୀର ପଠାରେ ପଠାରେ କେତେ ଦେବ ଦେଉଳ । ପୂଜା ପାର୍ବଣରେ କେତେ ନାଟ ଓ ତାମସା । ଆଗରୁ ବୈଷ୍ଣବପାଣି, ମୋହନ ଗୋସ୍ୱାମୀ ବାଳକୃଷ୍ଣ ମହାନ୍ତି କିଛି କିଛି ରାସ୍ତା ତିଆରି କରି ଯାଇଛନ୍ତି । ରାସ୍ତା ଉପରେ ମୁରୁମ ପଡ଼ିନି – ଖାଲ ଢିପ ରହିଛି – ସମାନୀକରଣ କିଏ କରିବ ? ମନରେ, ବିବେକରେ ବୈଷ୍ଣବ-ବସ୍ତୁ, ପୂଜା ଜଗନ୍ନାଥଙ୍କର ପ୍ରଦତ୍ତ ଭ୍ରମର ଚାଳନରେ ଚୈତନ୍ୟ ପ୍ରେମାମୃତର ଅଧିକାରୀ...

ରାମଶଙ୍କର ବଙ୍ଗାଳୀ ହୋଇ ଓଡ଼ିଶାରେ ମଞ୍ଚ ରୋପଣ କଲେ । ଅଶ୍ୱିନୀ କୁମାର ସେଇ ବଙ୍ଗାଳୀ, ହେଲେ ମଞ୍ଚ ଉପରେ 'କୋଣାର୍କ' ଥାପିଲେ, ଭାଷା ଅଧା ବଙ୍ଗାଳୀ, ଅଧା ଓଡ଼ିଆ ରହିଗଲା । ଭଲ ଭାବରେ ପଥ ଉପରେ ମୁରୁମ ପଡ଼ିନାହିଁ । ଓଡ଼ିଆଭୂଇଁର ସୁଗନ୍ଧ ପବନ ଏବେ ବି ବହିଆସୁନାହିଁ । କାବ୍ୟ ଜଗତ ସୁନ୍ଦର ହେଲାଣି । ରାଧାନାଥ, ମଧୁସୂଦନ, ଗଙ୍ଗାଧର .. ତାଙ୍କଠୁ ବା କିଏ କଅଣ ବେଶୀ କରିବ ? ଅଭାବ ରହିଛି ମଞ୍ଚ ଉପରେ ଜୀବନ ଫୁଟାଇବା କଳା । ଉପେନ୍ଦ୍ର ଦେବ ଦୁର୍ଲଭ, ଘନକୃଷ୍ଣ... ଧର୍ମ ଭକ୍ତିର ସୁଅ ଛୁଟାଇଲେ, ଦେହରୁ ଦେହାତୀତକୁ ଗଲେ । ଅଶ୍ୱିନୀ ଯେଉଁ ଅଙ୍କୁର ଫୁଟାଇଲେ, ତାଙ୍କୁ ମହୀରୁହ କରିବାକୁ ପଡ଼ିବ ।

ଓଡ଼ିଆ ଜାତିଟା କୂଅ ଭିତରେ ଭେକ ସାଜି ରହିଛି । ବିଶ୍ୱଟାକୁ ସେଇଟି ଦେଖୁଛି । ଆତ୍ମ ସନ୍ତୋଷ ପାଉଛି । ତାକୁ ଦିଲ୍ଲୀ ଦରବାରକୁ ଯିବାକୁ ହେବ । ପଡ଼ୋଶୀମାନେ ତାଙ୍କ ଜାତୀୟ କଳାକୁ ଲୋକ ପରିଚିତ ଦେଲେଣି । ଓଡ଼ିଆ ସଙ୍ଗୀତ, ନୃତ୍ୟ ଅନାଦୃତ... ସୁଅ ଭଳି ଛୁଟି ଆସୁଛି ବିଦେଶୀ, ବିଦେଶୀ ଢାଞ୍ଚାର ନାଟ୍ୟ ପରିବେଷଣ । ଓଡ଼ିଆ ଜୀବନ, ତାର ସଂସ୍କୃତି ପ୍ରତିଫଳୁନାହିଁ ଜାତୀୟ ରଂଗମଞ୍ଚରେ, ଆଜି ସଙ୍ଗୀତ ପ୍ରବାହରେ... ।

ଏଇ ଅବଶୋଷ, ଅଭିମାନ, ଗୋଟାଏ ଲୋକକୁ ବିଳପିତ କଲା । କୋଣାର୍କ-ରମଣୀ କଅଣ ସେଇ ଶୈଳ ଧାରରେ ନାଚୁଥିବ ? ଆହା କେତେ ସୁନ୍ଦର ସେ ଦର୍ପଣ-ଦେଖା ମୁଖ-କମଳ ! କେତେ ସୁନ୍ଦର ସେ ଜଘନ ଉପରେ କିଙ୍କିଣୀମାଳ ? ଏ କଅଣ ଏଇଠି ଅପମୃତ୍ୟୁ ପାଉଥିବେ ? ଏ କଳା-କୁଭୁକମୀମାନଙ୍କୁ କଅଣ ଉଠାଇ ଆଣି ହେବନି ଜନତାର ଅଙ୍ଗନକୁ ? ଦକ୍ଷିଣରେ ନାଚୁଛନ୍ତି, ଉତ୍ତରରେ ନାଚୁଛନ୍ତି, ସବୁଆଡ଼େ ନାଚ, ଗାନ, କଳାମଣ୍ଡପ......ଓଡ଼ିଶାର କଅଣ ବିଶେଷତ୍ୱ ନାହିଁ ? ସେମାନେ କହିବେ ଆମର ଭାରତ ନାଟ୍ୟର ସୋଦରା, ସେମାନେ କହିବେ କଥକର ନାଚୁଣୀ, ସେମାନେ କହିବେ, ମଣିପୁରୀର ଗୋଟାଏ ଦାସୀ......ନାଁ ତ ଜଗନ୍ନାଥ ଦେବତା, ଜଗନ୍ନାଥ ଭାଗବତ କାରର ଦେଶରେ କଅଣ ସବୁ ମିଶା ମିଶି ଲୀଳା ରହିଛି ?

ବାଧିଲା ଏ ଗୀତ··· ଧରିଲେ ହାରମୋନିୟମ··· ଆଖଡ଼ା ହେଲା । ଆଖିରେତ ଅଞ୍ଜନ ଅଛି, ଟାଣିଲା ସେ ବଶୀକରଣ ମନ୍ତ୍ର··· ଆଉ କଳାକାହ୍ନୁଙ୍କର ମାନ ଭଞ୍ଜନ ପାଲା । ଓଡ଼ିଶୀ ବୈଷ୍ଣବ କୀର୍ତ୍ତନ··· ଏଇ ପୁରୀ ଧାମର ଛକ ଯାଗା ଦେଖିଲା; ଗୋଟାଏ ଲୋକ ଗୋଟି ପୁଅ ଠିଆ କରି କୋଟିଏ ଲୋକଙ୍କୁ 'ରସ' ଚଖାଉଚି···ଦେଉଳ ପଣ୍ଡା ଡାକିଲା ଆରେ, ବେହିଆ ଖାସା ଚଖାଟାରେ···ଆଗକୁ ବଡ଼ ମଣିଷ ଟାଏ ହେବ···ହେବ···ହେବ···

ରସରୁ ବିରସ···କେତେ ବାଟ ଯିବାକୁ ହେବ । ରାସ ଜମିଲା, ହେଲେ ମୋହନ ସୁନ୍ଦରଙ୍କ ଭଳି ନୁହେଁ । ଓଡ଼ିଆ ଭାଇଏ ତିଆରି ହୋଇ ନାହାନ୍ତି । ପୁଅ ଝିଅଙ୍କ କାନରେ ଯେମିତି ନପଡ଼େ, ସେଥିପାଇଁ ବାପାମାଆଙ୍କର କଟକଣା······ସେ ଲୋକଟା ବେହିଆ ······ନାଚୁଆ ବେହିଆ······ତା ପାଖ ମାଡ଼ ନାହିଁ······ ଖରାପ ହୋଇଯିବ··· ହାରମୋନିୟମ ଛୁଇଁଲେ, ବଂଶୀ ଫୁଙ୍କିଲେ, ବଜାଇ, ସମାଜ ସହିଁବ ନାହିଁ···

ଦଧୀଚୀ ଭଳି ଯୁଝିଲେ, ଅସ୍ଥି ମଟ୍ ମଟ୍···କଲା-ନିଜ ପେଟରା ପାଟକୁ ଏମାନେ ଦେଖୁ ନାହାନ୍ତି ? କର୍ପୂର ଚନ୍ଦନ ବାସରେ ଖଣ୍ଡୁଆ ପାଟ ସରସ ଜୀବନ୍ତ ହୋଇ ପଡ଼ି ରହିଛି, ଛୁଇଁ ଦେଲେ ଶତ ଦୀପ୍ତିରେ ଝଲସି ଉଠିବ···ଜାତି ଚିହ୍ନିନ ତାର ଜାଗ୍ରତାକୁ । ବଙ୍ଗାଳ ଥିଏଟର କଟକ ବକ୍ଷରେ ସତ ସତ ଝୁଲିଛି···ବଙ୍ଗାଳ ଯାତ୍ରା ଆସ୍ଥାନ ଜମେଇଛି ···ଲୋକେ ଧାଇଁଛନ୍ତି କଲିକତାକୁ ରସ ଶିଖିବା ପାଇଁ······ହଜୁଷ୍ଟ ଅପମାନ ପାଇଲେ, କଳାକାର ବନମାଳୀ ଅପମାନ ପାଇଲେ···ଜିଦ୍‌ଖୋର ଲୋକ, ତିଆରିକଲେ ମଞ୍ଚ । ବଙ୍ଗଳା ଥିଏଟରକୁ ଲେଖିଲେ ଅଶ୍ରୁମା···ସମେ ସବୁ ଝାଉଁଳି ପଡ଼ିଲା···ଜାତିର ଅନାଦର ମଞ୍ଚକୁ ଗର୍ଭି ବୃହନ୍ନଳ କରି ଦେଲା ।

ମାଣିକ ଗଉଡ଼ୁଣୀ ଆଖି ଠାରିଲା···ଘାତ···ଘାତ···ଚିତ୍କାର ୧୯୪୩ର ଦୁଃଭିକ୍ଷ···ଉଜାଣି ନଇ ସୁଅ ଜାତୀୟ ସଂସ୍କୃତିର ଉଦ୍‌ବେଳନ···ଗୋଟାଏ ଲୋକକୁ ବିନିଦ୍ର ରଖିଲା···ଉପେନ୍ଦ୍ର ସଂଗୀତ, କବିସୂର୍ଯ୍ୟ କାକଳି, ବନମାଳୀର ବଉଳା ପ୍ରେମଗୀତ ପ୍ରାଙ୍କ ହୃଦୟରେ ଝିଟିକ୍ ଚେତିଲା···

ମଣି ମନ୍ଦିର......କେତେଦିନ ପଡ଼ିଥିବ ? ଖୁଲିଲି ସ୍ୱର ଲିପି ଖଞ୍ଜା...
ମାହାରୀ କଣ୍ଠରୁ, ଦେବଦାସୀର ନୂପୁରରୁ, ଗୋଟିପୁଅର ବଭଙ୍ଗରୁ
ଆମଦାନୀ ହେଲା ରସ ମୂର୍ଚ୍ଛନା...ପୁଣିତ ରହିଛନ୍ତି ଶତରୂପା କୋଣାର୍କ
କାମିନୀ । ତାଙ୍କର ଅଜସ୍ର ଭଙ୍ଗୀମାରୁ ଛଣା କଳା...ଓଡ଼ିଶୀ ନୃତ୍ୟର
ଆଦ୍ୟ ଶୋଭା ଖେଳିଗଲା ତମସା ବାରିତ ଓଡ଼ିଶାର ପୁରେ...ପୁରେ...
କିଏ ଚଖେଇଲା ଏ ଅମୃତ ? ଆଦ୍ୟ ସ୍ରଷ୍ଟା ପ୍ରଥମି ଗୋସେଇଆ...
କାଳି ଚରଣ...ଗୋଟିଏ ଜୀବନ...ଆମର କଳା ଶାସ୍ତ୍ରୀୟ, ଆମ ନୃତ୍ୟ
ଶାସ୍ତ୍ରୀୟ, ଆମ ସଙ୍ଗୀତ ଶାସ୍ତ୍ରୀୟ...ଅଶାସ୍ତ୍ରୀୟ କିଛି ରହି ପାରେନା
କଳାମୟ ଓଡ଼ିଶା ଅଙ୍ଗନରେ...

ଲୋକନାଟ୍ୟର ଭାଗ୍ୟୋଦୟ...ଗୋଟାକ ପରେ ଗୋଟାଏ ନାଟ୍ୟ
ରଚନା...ମଞ୍ଚ ପ୍ରଦୀପରେ ଶୋଭିବନ ଐଶ୍ୱର୍ଯ୍ୟ...ଓଡ଼ିଆ ଥିଏଟର୍ସ...
ସଚେତକ ରସ ରାଜ ମୂର୍ତ୍ତି...

ଆଜି ଦେଖେ ପଚାଶ ବର୍ଷର ବର୍ଷୀୟାନ ପୁରୁଷ ଓ ବର୍ଷିୟସୀ
ନାରୀ...ତା ଉର୍ଦ୍ଧ୍ୱର ଅଭିନେତା ଅଭିନେତ୍ରୀ...ଓଡ଼ିଶାର ପଥଘାଟେ
ଅଶ୍ରିତର କାଳିଚରଣ ସ୍ମୃତିକୁ ପାଥେୟ କରି ଦୁଃଖ କଷ୍ଟେ ଚଳୁଛନ୍ତି ।
ଜରାଗ୍ରସ୍ତଙ୍କ ପାଇଁ ଜରା ନିବାସ ଅଛି । ଏମାନଙ୍କର ନିବାସ ନାହିଁ ଅଥଚ
ଶତ ଗର୍ବିର ରୋମାଞ୍ଚକ ଏଇ ଓଡ଼ିଆ ଥିଏଟର୍ସ ଅଭିନେତ୍ରୀଗଣ ପାଞ୍ଚ
ବର୍ଷରୁ ଷୋଡ଼ଶୀ ଯାଏ କାଳିଚରଣ ପ୍ରଦର୍ଶିତ କଳା ଚର୍ଚ୍ଚାରେ ମନପ୍ରାଣ
ଢ଼ାଳି ଦେଇଥିଲେ । କଥା ପଡ଼ିଲେ ଏମାନଙ୍କ ହାତ ଟେକି ହୋଇଯାଏ
ଗୁରୁଙ୍କ ଉଦ୍ଦେଶ୍ୟରେ...

ବଂଶଧାରା ଛିଣ୍ଡେ ନାହିଁ...କାଳିଚରଣ ପରେ ଏବେ କେତେ
ଚରଣ ତାଣ୍ଡବରେ ଓଡ଼ିଶାର ନବ୍ୟତମ ମଞ୍ଚ ଧୁ ଧୁ ହୋଇ କମ୍ପୁଛି ।
ଉଟ୍‌ଘଟ୍ ଉଦ୍‌ଭଟ କଳକଳା ନାଦରେ...କିନ୍ତୁ ଗୋଟାଏ ଅଭିଜାନ
ଗୋଟାଏ ଘର, ଗୋଟାଏ "ଗାର୍ଲ ସ୍କୁଲ"କୁ ଏଯାଏ ପ୍ରତିହତ କରିବାର
ଶକ୍ତି ଆସିନି କାହାର...ହଁ ଖୁଲିଛି ଏକ୍‌ସପେରିମେଣ୍ଟ ବିଜାତୀୟ
ଭାବାନୁସରଣ କରି...ବଞ୍ଚିବ କି ମରିବ କିଏ ଜାଣେ ?

ଲୋକ ସଂସ୍କୃତିରୁ ଉଦ୍ଭବ, ଯାହା ଆଜି ସୁଆଙ୍ଗ ଆଡ଼କୁ ଠେଲି
ହୋଇ ଏ ଜାତି ଯାଇଛି...ପୁଣି ଚକ ଘୁରୁଛି, କାଳିଚରଣ ଖାଣ୍ଟି

ସୁଆଙ୍ଗବାଲା···ଚକରେ ଗଢ଼ି ଗଢ଼ି, ମାଟି ପିତୁଳାଗୁଡ଼ାକୁ ବାଡ଼େଇ ପିଟେଇ ପ୍ରତିମା ସାଜଲେ ଅସଲ କୁମ୍ଭାର···ପ୍ରତିଭାର ସ୍ୱୀକୃତି ଝୁରିଆଡ଼େ···।

ସୂର୍ଯ୍ୟାସ୍ତର ରଙ୍ଗ ପଡ଼ିଲାଣି ସେ ଦେହରେ ମନ ବି ଓହରି ଆସିଲାଣି ବିଷୟ ଜଞ୍ଜାଳରୁ···ବାସସ୍ଥାନ—ଜଗନ୍ନାଥ ବଲ୍ଲଭ···ଆତ୍ମାର ସ୍ଥାନ ଶ୍ରୀଜଗନ୍ନାଥଦେବ, ମନର ସ୍ଥାନ କଳାମୟ ଉତ୍କଳ···ତେଣିକି ଆଉ କିଛି ନାହିଁ···ବଧେଇ ଦେଇଥିଲି ଚିଠି ଖଣ୍ଡିକରେ। ଓଡ଼ଶୀ ଅସଲ କୁମ୍ଭାରକୁ···ଉତ୍ତର ଆସିଲା—

"ଆଜି ସ୍ନେହମଖା ଚିଠିଟି ପାଇଲି। ମନ ପାଶୋରି କରି ନାହିଁ। ସେତିକି ମୋର ଆନନ୍ଦ। ତମ ବଧେଇଟା ମତରେ ବହୁମୂଲ୍ୟ। ମୁଁ ଆଜିକାଲି ନିତାନ୍ତ ଅସୁସ୍ଥ। ଚାଲି ପାରୁ ନାହିଁ ମୋଟେ। ଯାହା ଜଗନ୍ନାଥଙ୍କ ଇଚ୍ଛା। ତମ ଓ ପିଲାମାନଙ୍କ ଦେହପା ଖବର ଲେଖି ନାହଁ। ସେତିକି ଜାଣିବାକୁ ମୋର ଇଚ୍ଛା। କେବେ କଟକ ଆସିଲେ ଟିକିଏ ଭେଟା ଭେଟିର ବଡ଼ ଆଶା।

ଜଗନ୍ନାଥେ ତମକୁ ସୁଖୀ ଦୀର୍ଘାୟୁ କରନ୍ତୁ ଇତ୍ୟାଳି।

ତମର ସ୍ନେହରୁଣୀ<br>
କାଳୀ ଚରଣ"

ଲେଖି ରଖେଁ ମୋ ପିଲାମାନେ (ଝିଅ) ଯାହାକିଛି ସଙ୍ଗୀତ ନୃତ୍ୟ ଓ ଅଭିନୟରେ ଯଶ ଅର୍ଜନ କରିଛନ୍ତି, ତାହା ଏଇ ମନୀଷାସମ୍ପନ୍ନ ପୁରୁଷଙ୍କର ଆଶୀର୍ବାଦରୁ। ତେଣୁ ପିଲାମାନଙ୍କ ଦେହପା ଖବର ନ ନେବେତ ଆଉ କିଏ ନେବ ?

ଏତିକି··· ଆପଣଙ୍କ ଦେହପା'କୁ ଆରାଧ୍ୟ ଦେବତା ଜଗନ୍ନାଥେ ଅଛନ୍ତି··· ଏ ଶୁଭ ଜୟନ୍ତୀରେ ଏତିକି ପ୍ରାର୍ଥନା। ଏ ଜାତି ଆପଣଙ୍କୁ ବିସ୍ମୃତ ନ ହୋଇ ସିଆରି କାଟି ସୁନା ଫଳାଉ—ଆହୁରି ବେଶୀ ବେଶୀ··· ଆପଣ ଶତ ଶରଦ ଜିଅନ୍ତୁ। ଧବ ସ୍ୱର୍ଗ ହେଉ ସଂସ୍କୃତି ଚେତନାରେ···।

—*—

# ଏକ ଅର୍ଥହୀନ ଆକୁଳତା......

## ଡକ୍ଟର ନିତ୍ୟାନନ୍ଦ ଶତପଥୀ

କାଳୀ ବାବୁଙ୍କ ସହିତ ମୋର ପ୍ରଥମ ଭେଟ ହୁଏ ତାଙ୍କ 'ଜଗନ୍ନାଥ ବଲ୍ଲଭ' ଘରେ । କାହା ସହିତ ଯାଇଥିଲି ଠିକ୍ ମନେ ନାହିଁ, କିନ୍ତୁ ଉପଲକ୍ଷ୍ୟଟି ଥିଲା ତାଙ୍କ ସହିତ ପରିଚିତ ହେବା, ଯେ କୌଣସି ସଂସ୍କୃତି ପ୍ରେମୀ ତରୁଣ ପାଇଁ ତାହା ଏକ ଆନନ୍ଦଦାୟକ ବ୍ୟାପାର ନିଶ୍ଚୟ । ପୁଣି ଓଡ଼ିଶାର ଏଇ ଅପ୍ରତିଦ୍ୱନ୍ଦୀ ଜନ-ନାଟ୍ୟକାର, ତାଙ୍କ ସହିତ ସଖ୍ୟ ସ୍ଥାପନ ପାଇଁ କାହାରବା ପ୍ରଲୋଭନ ନ ରହିବ ? ସେଇ ପ୍ରଥମ ସାକ୍ଷାତର ସ୍ମୃତି ମୋମନରେ ଗଭୀର ରେଖାପାତ କରିଥିଲା । ତାଙ୍କ ପାରିବାରିକ ଜୀବନ ସଂପର୍କରେ ମୋର ସାମାନ୍ୟତମ ଧାରଣା ସୁଦ୍ଧା ନଥିବାରୁ ସେ ଘରେ କେତେକ ବାଳିକାଙ୍କୁ ଦେଖି ତାଙ୍କ ଝିଅ ବା ସଂପର୍କୀୟା ବୋଲି ପ୍ରଥମେ ଭାବିଥିଲି । ଏପରିକି ଶ୍ରୀମତୀ କବିଚନ୍ଦ୍ରଙ୍କୁ ସାଷ୍ଟାଙ୍ଗ ନମସ୍କାରଟିଏ ଜଣାଇବାକୁ ପ୍ରସ୍ତୁତ ମଧ୍ୟ ହୋଇ ଯାଇଥିଲି । କିନ୍ତୁ ପରେ ପରେ ନିଜେ କାଳିବାବୁ ଆଳାପ ବେଳେ ମୋ ଭ୍ରାନ୍ତି ଦୂର କରି ଦେଇଥିଲେ । ଅତି ଆନ୍ତରିକତାପୂର୍ଣ୍ଣ ତାଙ୍କ ବ୍ୟବହାର । ପରକୁ ଆପଣାର କରିପାରି ନିଠେଇ ନିଠେଇ କେତୋଟି ମିଠା ମିଠା ସଂଳାପ । ସେ ଖଟ ଉପରେ ବାଡ଼କୁ ଆଉଜି ବସିଥାନ୍ତି, ମୁଁ ସେଇଁ ଖଟ ଉପରେ ବସି ତାଙ୍କ କଥା ଶୁଣୁଥାଏ । ଏମିତି କେତେ ଆଳାପ ଆଲୋଚନାପରେ ସେ ମୋତେ କହିଲେ 'ତୁମେ ମୋର ପୁଅ ପରି' । ଏ ପଦ ପଢ଼ିକା ବହି ତୁମେ ପଢ଼ାପଢ଼ି କର । ମୋ ଅନ୍ତେ ତୁମେ ଏସବୁ ଦେଖାଶୁଣା କରିବ ।" ମୁଁ ବିସ୍ମିତ ହେଲି । କାରଣ ଏପରି ଏକ ଗୁରୁଦାୟିତ୍ୱ ତୁଲାଇବା ଶକ୍ତି ମୋର ନଥିଲା, ନିଜ ପ୍ରତିବି ସେତେବେଳେ ଏତେ ଆତ୍ମ-ପ୍ରତ୍ୟୟ ଆସି-ନଥିଲା । କିନ୍ତୁ ତାଙ୍କଘର ଚାରିଆଡ଼େ ବହୁତ ବହିପତ୍ର ଇତସ୍ତତଃ ଥିବା ଦେଖି ମୋ ମନରେ ଟିକେ ଲୋଭ ସଂଚାର ହୋଇଥିଲା । ମନେ ମନେ ଭାବୁଥାଏ ଏତେ ଆନ୍ତରିକତାପୂର୍ଣ୍ଣ ବ୍ୟବହାର କୌଣସି ବିଶିଷ୍ଟ ଲେଖକ-ଙ୍କଠାରୁ କ୍ୱଚିତ ମିଳିଥାଏ । "ତୁମେ ମୋର ଝିଅ ହେଲ, ତୁମେ ମୋର ପୁଅ ହେଲ"- ଏପରି ପ୍ରାଣଭିଜା ସଂବୋଧନ, ଏପରି ଆତ୍ମଶ୍ଳାଘାହୀନ

ସମ୍ଭାଷଣ ତରୁଣମାନଙ୍କ ପାଇଁ ଦୁର୍ଲ୍ଲଭ— ଅନ୍ତତଃ ଏ ଦେଶରେ । ତେଣୁ କାଳିବାବୁଙ୍କ ସହିତ ମୋର ପ୍ରଥମ ସାକ୍ଷାତ ମୋ ପାଇଁଥିଲା ଖୁବ୍ ଆମୋଦଦାୟକ । କାଳିବାବୁଙ୍କୁ ଯେ ମୁଁ ସଭାସମିତିରେ କେବେ ଦେଖିନଥିଲି ତା ନୁହେଁ, କିନ୍ତୁ ଏପରି ମୁହାଁମୁହିଁ ଆଲୋଚନା ଏଇ ପ୍ରଥମଥର ପାଇଁ । ମୁଁ ବୋଧହୁଏ ଗୋପାଳ ପ୍ରହରାଜଙ୍କ ସ୍ମୃତି ସମ୍ବଳିତ ଗୋଟିଏ ଲେଖା ତାଙ୍କଠାରୁ ଆଦାୟ କରିବାକୁ ଯାଇଥାଏ । କିନ୍ତୁ ମୁଖ୍ୟ ଉଦ୍ଦେଶ୍ୟଟି କ୍ରମେ ଗୌଣ ହୋଇ ପଡ଼ିଲା । ଏଣୁତେଣୁ ନାନାକଥା । ସତେଯେପରି ସେ ଆନନ୍ଦରେ ଫାଟି ପଡୁଛନ୍ତି । ଅନେକ କାହାଣୀ ଓ ଘଟଣା ସେ ବର୍ଣ୍ଣନା କରିଗଲେ । ତାରୁଣ୍ୟପାଖରେ ବୟସର ଏ ଆନ୍ତରିକ ସମର୍ପିତ ନିବେଦନ ସତେଯେପରି ଶାବକ ପକ୍ଷୀକୁ ପରିପୁଷ୍ଟ କରିବାକୁ ମାଆପକ୍ଷୀର ଚିରନ୍ତନ ଆକୁଳତା । ଏ ଆକୁଳତା ମୁଁ ଦିନେ ପଣ୍ଡିତ ନୀଳକଣ୍ଠଙ୍କଠାରେ ଉପଲବ୍ଧି କରିଥିଲି । ସେତେବେଳେ ମୁଁ ତାଙ୍କୁ ତାଙ୍କ ଆତ୍ମଜୀବନୀ ରଚନାରେ ସାହାଯ୍ୟ କରୁଥାଏ । ସେ ଡାକନ୍ତି ମୁଁ ଲେଖେ । ମୋର ମନରେ ଥାଏ ଠିକ୍ ସେହିପରି କାଳିବାବୁଙ୍କର ବି ଆତ୍ମଜୀବନୀ ଲେଖା-ହୁଅନ୍ତା-ଅନ୍ତତଃ ରଙ୍ଗମଞ୍ଚ ଓ ନାଟକର ଇତିହାସ ପାଇଁ ତା' ହୁଅନ୍ତା ଏକ ସମ୍ଭାର ପୂର୍ଣ୍ଣ ଐତିହାସିକ ସଂପଦ । ଏକଥା ମଧ୍ୟ ମୁଁ ଆଲୋଚନା ବେଳେ ବୋଧହୁଏ ପ୍ରକାଶ କରିଥିଲି । ଏଣୁତେଣୁ ନାନାକଥା ପଡ଼ିଲା । ଅଧିକାଂଶ ତାଙ୍କ ନିଜବିଷୟ ଓ ନାଟ୍ୟଜଗତ ସହିତ ତାଙ୍କ ସଂପର୍କର କାହାଣୀ ।

ସେଦିନ ବିଳମ୍ବରେ ଫେରିବାକୁ ହେଲା । ଗୋଟାଏ କିଛି ଦାୟିତ୍ୱ ମୋ ଉପରେ ବୋଧହୁଏ ସେ ନ୍ୟସ୍ତ କରିଥିଲେ କିମ୍ବା କାହା ପାଖକୁ କୌଣସି ବାର୍ତ୍ତା । କାରଣ କିଛିଦିନପରେ ତାଙ୍କଠାରୁ ଗୋଟିଏ ଚିଠି ପାଇ ମୁଁ ଅନାବିଳ ହୃଦୟର ଆନ୍ତରିକ ତାଡ଼ନାରେ ଜଡ଼ସଡ଼ ହୋଇ ପଡ଼ିଲି । ସେ ଲେଖିଥାନ୍ତି— ବାପା, ଚିତ୍ରପାଣୋଗ୍ରୀ ହେଲାକି ? ମୁଁ ଯେଉଁ କଥା କହିଥିଲି, କଣହେଲା ? ଏ ଚିଠିଟିର ଭାଷା ଓ ଭାବ ତାଙ୍କ ସହିତ ମୋ ସଂପର୍କକୁ ଗଭୀରତର କରିଥିଲା । ଅନେକ ବନ୍ଧୁଙ୍କୁ ମୁଁ ଏକଥା ସେତେବେଳେ ଆଗ୍ରହରେ କହିଥିଲି ।

ଏହି ସମୟରେ ପୂଜ୍ୟ ପ୍ରଜା ସଂସଦର ଗୋଟିଏ ଅଧିବେଶନ ସଭାପତି ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ଘରେ ଡକା ଗଲା । କାଳିବାବୁ

କଷ୍ଟକର ଆସିବେ ବୋଲି ଆମେ ବିଶ୍ୱାସ ନ କରୁଥିଲେବି ସେ ରିକ୍ସା-ରେ କାଣ୍ଡପୁର ଆସି ପହଞ୍ଚିଥିଲେ । ୧୯୬୯-୭୦ ମସିହା ହେବ । ସେଦିନ ପୂଜ୍ୟ ପୂଜା ସଂସଦର ଉପସଭାପତି ଭାବେ ତାଙ୍କୁ ମନୋନୀତ କରାଗଲା । ସେହିଠାରେହିଁ ସେ ଆଜୀବନ ସଭ୍ୟଭାବେ ଗୃହୀତ ହେଲେ । ପ୍ରାୟ ୧୯୭୪ ମସିହାଯାଏ ଉପସଭାପତିଭାବେ ସେ କାମ ତୁଲାଇଛନ୍ତି । ଏ ସଂସଦର କାର୍ଯ୍ୟକ୍ରମ ସହିତ ତାଙ୍କର ନିବିଡ଼ ସହଯୋଗ କ୍ରମେ ଗଭୀର ଆନ୍ତରିକତାରେ ପରିଣତ ହୋଇ ଆସୁଥିଲା । କିନ୍ତୁ ସେ ନିଜ ସ୍ୱାସ୍ଥ୍ୟ ଦୃଷ୍ଟିରୁ ଆଜି ଆମସହିତ ଯୋଗଦେଇ ପାରିଲେ ନାହିଁ । ତେଣୁ ସଂସଦର ଦାୟିତ୍ୱରୁ ତାଙ୍କୁ ଅବ୍ୟାହତି ଦିଆଗଲା ।

କାଳିବାବୁ 'କୁମ୍ଭାରଚକ' (ତାଙ୍କ ଆତ୍ମଜୀବନୀ) ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଲେ । ଏହା ତାଙ୍କ ଜୀବନର ସମଗ୍ର ସାହିତ୍ୟସାଧନା ପାଇଁ ଏକ ସାମାନ୍ୟତମ ସ୍ୱୀକୃତିମାତ୍ର । କିନ୍ତୁ ଯେଉଁ ସମୟରେ ଏ ପୁରସ୍କାର ତାଙ୍କୁ ମିଳିଲା ସେତେବେଳେ ସେ ରୁଗ୍ଣ ଓ ଶଯ୍ୟାଶାୟୀ । ବାର୍ଦ୍ଧକ୍ୟ ଏଇ ଚିର ପ୍ରଦୀପ୍ତ ଯୁବକଟିର ଅଙ୍ଗକୁ ଅବଶ କରିଦେଇଛି । ମନ ମଧ୍ୟ ସେହିପରିମାଣରେ ଦୁନିଆର ବହୁ ଝଡ଼ଝଞ୍ଜାରେ ହୁଏତ କବଳିତ । କିନ୍ତୁ କାଳିବାବୁଙ୍କ ଏକନିଷ୍ଠ ସାହିତ୍ୟ ସାଧନା ଏଯୁଗ ପାଇଁ ଯେ ଏକ ବିସ୍ମୟର ବ୍ୟାପାର, ଏଥିରେ ବୋଧହୁଏ ଦ୍ୱିରୁକ୍ତିର କାରଣ ନାହିଁ । ଓଡ଼ିଶା ରଙ୍ଗମଞ୍ଚ ସହିତ ଜଣେ ଅଭିନେତା ଓ ନାଟ୍ୟ-କାର ଭାବେ ତଥା ଓଡ଼ିଶୀ ସଙ୍ଗୀତର ଜଣେ ପ୍ରତିଷ୍ଠାତା ଭାବେ କାଳିବାବୁ ଆମମାନଙ୍କ ସ୍ମୃତିରେ ଚିର ଦେଦୀପ୍ୟ ଏକ ଅନିର୍ବାଣ ସାରସ୍ୱତ ଶିଖା ଭାବରେ ପ୍ରତିଭାତ ହେବେ ।

ସେଦିନ କେହି ଜଣେ ବନ୍ଧୁ ଶ୍ରୀ ରାମଚନ୍ଦ୍ର ଭବନରେ କାଳୀବାବୁଙ୍କ ପ୍ରସଙ୍ଗରେ ମୋତେ ଯେଉଁ ମର୍ମବିଦାରକ କାହାଣୀ ଶୁଣାଇଲେ ସେଥିରେ ମୋ ଅନ୍ତର ଏକ ଅସହାୟ କାରୁଣ୍ୟରେ କୁରୁଳି ଉଠିଲା । କବି ପଦ୍ମଚରଣ ଜୀବଦଶାର ଶେଷ ଭାଗରେ ଔଷଧ ଓ ପଥ୍ୟ ପାଇଁ ସମ୍ବଳ ପାଇ ନଥିଲେ । ଶିଳ୍ପୀ ବି. ବର୍ମା ଓ ଔପନ୍ୟାସିକ କବି ପ୍ରାଣକୃଷ୍ଣ ସାମଲ ଘୋର ଅଭାବ ଓ ଅନାଟନ ମଧ୍ୟରେ ଆଖି ବୁଜିଲେ । ଦାରିଦ୍ର୍ୟର ଦୀପଶିଖା ଆଚାର୍ଯ୍ୟ ହରିହରଙ୍କ ଶେଷଜୀବନର ଅବସ୍ଥା ମୁ ଆଖିରେ ଦେଖିଛି । କିନ୍ତୁ କବିଚନ୍ଦ୍ର କାଳୀଚରଣ - ଆଧୁନିକ ଓଡ଼ିଆ ନାଟକର

ଜନକ - ସେ ବି କାହିଁକି ଉତ୍କଟ ଅଭାବ ଭିତରେ କାଳାତିପାତ କରୁଛନ୍ତି ? ଅର୍ଦ୍ଧଶତାଧିକ ପୁସ୍ତକ, ଗ୍ରନ୍ଥାବଳୀ, ଜୀବନୀ ଓ ନାଟ୍ୟ-ସମ୍ପର୍କୀୟ ଆଲୋଚନାରେ ଏ ଲେଖକ ଯଶସ୍ୱୀ ହୋଇଛନ୍ତି । ନାଟକ ରାଜ୍ୟର ଏଇ ଗୌରବାନ୍ୱିତ ଶିଳ୍ପୀ ନାଟ୍ୟମଂଚର ଏକଦା ବହୁ ପ୍ରଶଂସିତ ଓ ଆକାଂକ୍ଷିତ କାହାଣୀ । ଏ ଦେଶ ତାଙ୍କଦ୍ୱାରା ଏତେ ଭାବରେ ଲାଭବାନ୍ ହୋଇ ବି ତାଙ୍କୁ ଶେଷ ଜୀବନରେ ଟିକେ ଶାନ୍ତି ଓ ସୁଖରେ ରହିବାକୁ ଦେବନାହିଁ ? ଅଭାବର ଘୂର୍ଣ୍ଣି ଭିତରେ ସେ ବି ଦୁଃସ୍ଥ ଓଡ଼ିଆ ଲେଖକର ସୂଚୀପତ୍ରରେ ଆଜି ଏକ ସଂଖ୍ୟାବୃଦ୍ଧି କରିବେ । ଅଥଚ ଏ ଦେଶର ସଂସ୍କୃତିପ୍ରିୟ ଜନସାଧାରଣ ସଂଗୀତ ଓ ନାଟକ ଏକାଡେମୀ, ନାଟ୍ୟାମୋଦୀ ସରକାର ଏବଂ କାଳୀବାବୁଙ୍କ ଅଗଣିତ ଶିଷ୍ୟ, ପ୍ରଶିଷ୍ୟ ସମସ୍ତେ ଜଳକାପରି ଚାହିଁରହି ଖାଲି ଅସହାୟତା ପ୍ରକାଶ କରୁଥିବେ ! ତାଙ୍କ ପୁସ୍ତକର ପ୍ରକାଶକମାନେ ପ୍ରଚୁର ସମ୍ପଦର ଅଧିକାରୀ ହୋଇ ବି ତାଙ୍କ ପାଉଣା ଗଣ୍ଡିକ ଠିକ୍‌ଭାବେ ତାଙ୍କୁ ଦେଇ ପାରୁ ନଥିବେ ! ସବୁଠାରେ ଖାଲି ଅସହାୟତା ଓ ଅସ୍ୱୀକୃତିର ଏ ପ୍ରହସନ ଏ ଦେଶରେ କେତେଦିନ ଆଉ ଚାଲିବ ?

ଅଥଚ ଠିକ୍ ପରେ ପରେ ଆରମ୍ଭ ହୋଇଯିବ କୁମ୍ଭୀର କାନ୍ଦଣା । ତାଙ୍କ ପ୍ରଶସ୍ତି ଗାନରେ ପତ୍ର ପତ୍ରିକା ମୁଖର ହୋଇ ଉଠିବ । ଶ୍ରୀରାମଚନ୍ଦ୍ର ଭବନର ସ୍ମୃତିସଭାରେ ବକ୍ତାମାନେ ବାବଦୁକ ହୋଇ ଉଠିବେ । କେଉଁ ପ୍ରଗଳଭ ବକ୍ତା ତାଙ୍କ କଥା କହୁ କହୁ ଲୁହ ଛଳଛଳ ଓ ବାଷ୍ପରୁଦ୍ଧ-କଣ୍ଠ ବି ହୋଇଯିବେ । ସରକାର ହୁଏତ ଅନୁଗ୍ରହକରି କିଛି ପରବର୍ତ୍ତୀକାଳୀନ ପୁରସ୍କାର ଘୋଷଣା କରିବେ - ଯାହା ତାଙ୍କ ନିୟୋଗରେ ଆଦୌ ଆସି ପାରିବ ନହିଁ । ସେ ତାର ଉପଭୋକ୍ତା ହୋଇ ପାରିବେ ନାହିଁ । ସଂଗୀତ ନାଟକ ଏକାଡେମୀ ତାଙ୍କପାଇଁ ସ୍ମୃତି ବକ୍ତୃତାମାଳାର ବ୍ୟବସ୍ଥା କରିବେ । ଏଇ ବିକଳପରିସ୍ଥିତି ଆମ ଦେଶର ପ୍ରକୃତି ଦାରିଦ୍ର୍ୟ ଓ ଅନୁଦାରତା ମଧ୍ୟରେ ଆଜିଏକ ବର୍ଣ୍ଣମାଳା ହୋଇ ରହିଯିବ । ଏ ଉତ୍କଟ ନୈତିକ ସଙ୍କଟ ଓ ମାନସିକ ଗ୍ଳାନିରୁ ଆମ ଦେଶ ଓ ଜନସାଧାରଣ ଉଦ୍ଧୁରି ପାରିବେନି କି ଶୋଚନୀୟ ବିଷୟ ସତେ !

ବ୍ୟକ୍ତିଗତଭାବେ ମୁଁ ବି ଦୋଷୀ । ରାଧାନାଥଙ୍କ ସ୍ୱର ସହିତ ସ୍ୱର ମିଳାଇ ମୁଁ ମଧ୍ୟ କହିବାକୁ ଚାହେଁ ଯେ, ମୁଁ ମୋ ନିଜ ପ୍ରକୃତିକୁ ବି

ଦର୍ପଣରେ ଦେଖୁଛୁ । ଆମେ ସୁବିଧାବାଦୀ ଓ ସୁଯୋଗ-କାମୀ ଗୋଷ୍ଠୀ । ଆମେ କାହାର ସୁଖ ଦୁଃଖରେ କେବେ ଭାଗ ନେଇଚେ ? ଖାଲି ଆମର ସମସ୍ୟା, ଆମର ଭବିଷ୍ୟତ ଚିନ୍ତା ଓ ଆମର ଉତ୍‌ଥାନ ପତନର ଇତିହାସ ଆମେ ସାଇତି ରଖୁ । ଏ ଦେଶର କବି ସାହିତ୍ୟିକ କଳାକାର-ମାନଙ୍କ ବିଷୟରେ ଆମ ପାଖରେ କୌଣସି ଖବର ପହଂଚେ ନାହିଁ । ଏକ ପ୍ରକାର ନିର୍ଜନ ଦ୍ୱୀପରେ ବସି ଏଠି କଳାକାରମାନେ ନିର୍ବାସିତର ବିଳାପ ଶୁଣାନ୍ତି । ଆମେ କହୁ, ପ୍ରଶଂସାକରୁ, ତାରିଫ୍‌କରୁ । କିଂତୁ ଆଜି କୌଣସି ଭାବରେ ତାକୁ ସାହାଯ୍ୟ କରି ତା' ଲେଖମାର କୁଣ୍ଠିସ୍ କରୁନାହୁଁ । ସେ ଦୃଷ୍ଟିରୁ ପଡ଼ୋଶୀ ବଙ୍ଗ ସଂସ୍କୃତିରୁ ଆମକୁ ବହୁତ କିଛି ଶିଖିବାକୁ ହେବ । ଅହମିକା ବା ଅଭିମାନ ବଶତଃ ଏପରି ଏକ ଉତ୍କଟ ସତ୍ୟକୁ ଆମେ ଅସ୍ୱୀକାର କରିପାରିବାନି । ଇତିହାସ ଏହାର ସାକ୍ଷୀସାକ୍ଷୀ ନିଜର୍ ଦେବ ।

ତାଙ୍କ ବିଷୟରେ ଏ ଯେଉଁ ସାହିତ୍ୟ-ପରିକ୍ରମା ପ୍ରକାଶ ପାଇବାକୁ ଯାଉଛି ତହିଁରେ ମୋର ସ୍ମୃତିଚାରଣ ନିତାନ୍ତ ନଗଣ୍ୟ ବ୍ୟାପାର । ପୂଜନୀୟ ବ୍ୟକ୍ତିମାନଙ୍କୁ ଆମେ ସଭାସମିତି ମାଧ୍ୟମରେ ପୂଜା କରି, ଫୁଲମାଳ ଦେଇ କି ଲାଭ ମିଳିବ ଯଦି ଆମେ ବଞ୍ଚି ଥାଉଁ ଥାଉଁ ଅଭାବ ଅନାଟନରେ ସେମାନେ ଝୁଣ୍ଟିପଡ଼ିବେ ? ଚିକିତ୍ସା ଓ ପଥ୍ୟ ପାଇବେ ନି ? କ'ଣ ମୂଲ୍ୟ ଅଛି ଏ ସାହିତ୍ୟ ଏକାଡେମୀ ପୁରସ୍କାରରେ ଯଦି କବିଚନ୍ଦ୍ର କାଳିଚରଣ ଏ ଦେଶର ଏକ ପ୍ରଲୋଭନୀୟ ସାଇତା ସାମଗ୍ରୀ ଭାବିକି ଆମ ସମସ୍ତଙ୍କ ଲାଳନା ଲାଭ କରି ନ ପାରିଲେ ? ସବୁ ଆମର ସାମୟିକ ଉଚ୍ଛ୍ୱାସର ସ୍ୱୀକୃତି । ପରି ମୂହୂର୍ତ୍ତରେ ପରମ ବିସ୍ମୃତିର ପାରାବାରରେ ଆମେ ଉଦ୍‌ବୁଡ଼ି ପରି ଭାସୁଛେ । ମୂଲ୍ୟବୋଧ ପ୍ରତି ନିଘା ନାହିଁ । ତେଣୁ କାଳିବାବୁଙ୍କର ଏ ଅବସ୍ଥା (ଯାହା ହୋଇପାରେ ଏ ପ୍ରଦେଶର ପ୍ରତ୍ୟେକ ଲେଖକର ଦୁଃସ୍ଥିତାର ଏକ ମାନଚିତ୍ର) ଆମକୁ ଚହଲେଇ ଦେଉନାହିଁ । ଆମ ସଂସ୍କୃତିର ସଂରକ୍ଷକମାନେ ସଂସ୍କୃତି କହିଲେ କ'ଣ ବୁଝନ୍ତି କେଜାଣି ? କାଳିବାବୁ ବଞ୍ଚି ଥାଉଁ ଥାଉଁ ଓଡ଼ିଶାର ସାଂସ୍କୃତିକ ପ୍ରାଣକେନ୍ଦ୍ର କଟକ ସହରରୁ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ ଭାଙ୍ଗି ପଡ଼ିଲା । 'ଜନତା' ରଙ୍ଗମଞ୍ଚରୁ ମଞ୍ଚ ପ୍ରଦୀପ ଲିଭି ଯାଇଛି । 'କଳାଶ୍ରୀ' ନିଜକୁ ପ୍ରତିଷ୍ଠିତ କରି ଆସୁଥିବା ବେଳେ ମୃତ୍ୟୁ କବଳରେ କବଳିତ ହେଲା । ଅଥଚ ଏ ସହରରେ ଥିବା ତିନୋଟି ପ୍ରେକ୍ଷାଳୟ ଜନତାର ଉଚ୍ଛ୍ୱସିତ ଚଳଚ୍ଚିତ୍ର-ବିଭବରେ କ୍ରମେ

ଦ୍ୱିଗୁଣିତ ହେଲାଣି । ସହରରେ କ୍ରମେ ଗଢ଼ି ଉଠୁଥିବା ଆଉ କେତୋଟି ବିଶାଳ ପ୍ରାସାଦ ସୂଚନା ଦିଏ ଯେ ଖୁବ୍ ନିକଟରେ ଅନ୍ୟୁନ ଆଉ ୪ଟି ଚିତ୍ର ପ୍ରେକ୍ଷାଳୟ ଠିଆ ହୋଇଯିବ । ସେଠି ଟିକେଟ ପାଇଁ କଳାବଜାରୀ ଓ ସିନେମାଖୋରମାନଙ୍କ ଭିଡ଼ରୁ ଏହାର ବ୍ୟବସାୟିକ ଭବିଷ୍ୟତ ଯେ ଖୁବ୍ ନିରାପଦ—ଏକଥା ଦୃଢ଼ତାର ସହିତ କୁହାଯାଇ ପାରେ । ଆମ ଯୁବକମାନେ ଓ ଜନ ସାଧାରଣ ଯେଉଁପରି ସିନେମାମତ୍ତ ହୋଇ ଉଠିଛନ୍ତି ସେଥିରେ ସାଂସ୍କୃତିକ-ସରକାର କିଛି ସୁଚିନ୍ତିତ ପଦକ୍ଷେପ ନ ନେଲେ କାଳିବାବୁଙ୍କ ପରି ନାଟ୍ୟ ନିର୍ମାତାମାନେ ଘୋର ଅସହାୟ କାରୁଣ୍ୟରେ କେବଳ ଦୀର୍ଘଶ୍ୱାସ ଛାଡ଼ିବେ । ସଙ୍ଗୀତ ନାଟକ ଏକାଡେମୀ ଏ ଦିଗରେ ଯଦି ଆଶୁ ପଦକ୍ଷେପ ନ ନେଇ ପାରିବ ତେବେ ରାଜଧାନୀର ବିପୁଳ ବିଭବ ଓ ଆଟୋପ ଆମ ଓଡ଼ିଆ ଜନଜୀବନ ଉପରେ ସାଂସ୍କୃତିକ ପ୍ରଭାବ ପକେଇ ପାରିବ ନାହିଁ—ଏକଥା ନିଶ୍ଚିତ । ଏମିତି ଅନେକ ବିକ୍ଷିପ୍ତ ଚିନ୍ତା ମନକୁ ଆସୁଛି ।

ଜଣେ ନିତାନ୍ତ ନାସ୍ତିକ ଭକ୍ତର ଏ ଶ୍ରଦ୍ଧା ନିବେଦନକୁ ଏକ ଅର୍ଥହୀନ ଆକୁଳତା ଭାବରେ ଗ୍ରହଣ କରାଯାଇପାରେ । କାରଣ ସେ ବି କଣ ତା କର୍ତ୍ତବ୍ୟ କରି ପାରୁଛି ?

—*—

# ଏବଂ ଚଳଚ୍ଚିତ୍ର

## ବିଜୟ କୁମାର ପରିଜା

“ଭିକ ମାଗି କେହି କେବେ ବଡ଼ ହୋଇ ନାହାଁନ୍ତି। ହୋଇଛନ୍ତି ଦାବୀ କରି, ବିଦ୍ରୋହ କରି, ବିପ୍ଳବ କରି”—କଥାଟି ସଂପୂର୍ଣ୍ଣ ରୂପେ ସତ୍ୟ। ୧୯୪୭ ମସିହାରେ, ସ୍ୱାଧୀନତା ପ୍ରାପ୍ତିର ବର୍ଷକ ପୂର୍ବରୁ କବିଚନ୍ଦ୍ର କାଳୀଚରଣ “ଅଭିଯାନ” ନାଟକରେ “ପଦ୍ମାବତୀ” ଚରିତ୍ର ମୁଖରେ —ସମଗ୍ର ମାନବ ପ୍ରାଣକୁ ଜାତୀୟ ପ୍ରୀତିରେ ଉଦ୍‌ବୁଦ୍ଧ କରାଇ ଆଗାମୀ ସଂଗ୍ରାମରେ ଝାସ ଦେବା ପାଇଁ, ଏକ ପରୋକ୍ଷ ଆହ୍ୱାନ ଦେଲେ—ଏହା କେବଳ ଜାତୀୟ ଅଭିଯାନ ରୂପେ ପରିଚିତ ନୁହେଁ, ଅନ୍ୟାୟ ବିରୁଦ୍ଧରେ ଅଭିଯାନର ତୀବ୍ର ସ୍ୱର ପ୍ରକାଶ ନୁହେଁ—ଏହା ଆମ ଓଡ଼ିଆ ଜାତିର ଅଭିଯାନ।

ଆଜି ଭାରତୀୟ ଚଳଚ୍ଚିତ୍ର ଶିଳ୍ପ ପ୍ରାୟ ତେଇଶିଟି ବିଭିନ୍ନ ଭାଷାରେ ଚଳଚ୍ଚିତ୍ର ନିର୍ମାଣ କରି ସମଗ୍ର ପୃଥିବୀରେ “ଚଳଚ୍ଚିତ୍ର ନିର୍ମାଣ ଶିଳ୍ପ” କ୍ଷେତ୍ରରେ ଦ୍ୱିତୀୟ ସ୍ଥାନ ଅଧିକାର କଲାଣି ଏବଂ ଗତ ୬୪ ବର୍ଷ ଭିତରେ ପ୍ରାୟ ୧୩ ହଜାର ଚଳଚ୍ଚିତ୍ର ନିର୍ମିତ ହୋଇଥିଲେ ମଧ୍ୟ ଓଡ଼ିଆ ଭାଷାରେ ଗତ ୪୩ ବର୍ଷ ଭିତରେ ମାତ୍ର ୬୦ଟି ଚିତ୍ର ନିର୍ମାଣ ହୋଇଛି।

ଆମେ ଗରିବ। ଆମର ଶତକଡ଼ା ୭୫ ଭାଗ ଲୋକ ଦୁସ୍ଥ। ଏମିତିକି ପାର୍ବତ୍ୟାଞ୍ଚଳ ନାଗାଲାଣ୍ଡର ଗରିବର ସୀମାରେଖାକୁ ଆମ ଓଡ଼ିଶା ମଧ୍ୟ ଟପି ଯାଇଛି। ତଥାପି ପଲ୍ଲୀରେ, ସହରରେ ଲୋକେ ଚଳଚ୍ଚିତ୍ର ଟିଏ ଦେଖିବା ପାଇଁ ଅତି ଆଗ୍ରହ ପ୍ରକାଶ କରିଥାନ୍ତି।

୧୯୪୭ ମସିହାରେ ସରକାରଙ୍କର ଲୋକ ସମ୍ପର୍କ ବିଭାଗ ତରଫରୁ କବିଚନ୍ଦ୍ର କାଳୀଚରଣ ସର୍ବ ପ୍ରଥମେ “ଜନ୍ମମାଟି” “ଓ ନବନିଧି”—ଦୁଇଟି କ୍ଷୁଦ୍ର ଚିତ୍ର ନିର୍ମାଣ କଲେ।

ଏହାପରେ ବୈଦିକ ଓ ଆର୍ଯ୍ୟ ଧର୍ମର ମୂଳାଧାର ଓ ହୃତ୍‌ପିଣ୍ଡ "ଜଗନ୍ନାଥ" ସେ ନିର୍ମାଣ କଲେ ।

ଏହି ଘଟଣାର ଠିକ୍ ଦୁଇବର୍ଷ ପରେ ଓଡ଼ିଆ ଚଳଚ୍ଚିତ୍ର ଇତିହାସରେ ବିଖ୍ୟାତ ଚିତ୍ର "ଲଳିତା" ୧୯୪୯ ମସିହାରେ କବିଚନ୍ଦ୍ର କାଳୀଚରଣଙ୍କ କାହାଣୀ, ନିର୍ଦ୍ଦେଶନା ତଥା ସଙ୍ଗୀତ ନିର୍ଦ୍ଦେଶନାରେ ନିର୍ମିତ ହୋଇ ମୁକ୍ତି ଲାଭ କଲା ।

ପୁଣି, ଚଳଚ୍ଚିତ୍ରରେ ସଙ୍ଗୀତକୁ ପ୍ରାଧାନ୍ୟ ଦିଆଯାଉଥିବାରୁ ୧୯୪୮ ମସିହାରେ "ସୁର ଲେଖା" ଗ୍ରାମ ଫୋନ ରେକର୍ଡ କମ୍ପାନୀ ସର୍ବ ପ୍ରଥମେ କବିଚନ୍ଦ୍ର କାଳୀଚରଣ ହିଁ ପ୍ରତିଷ୍ଠା କରି ଥିଲେ ।

୧୯୫୧ ମସିହାରେ ସାମାଜିକ ଚଳଚ୍ଚିତ୍ର "ରୋଲ୍—୨୮" ମୁକ୍ତି ଲାଭ କଲା । ଚିତ୍ରଟିରେ ଆମ ଜୀବନର ସମସ୍ୟା ଏବଂ ତା'ର ସମାଧାନର ସୂତ୍ର ଖୋଜି ପାଇବାର ପ୍ରୟାସର ପରିକଳ୍ପନା ରହିଛି ।

ଏହା ପରେ ଗୋଟାଏ ଯୁଗ ।

ପୁଣି ଦୀର୍ଘ ବାର ବର୍ଷ ପରେ ୧୯୬୨-୬୩ ମସିହାରେ କବିଚନ୍ଦ୍ର କାଳୀଚରଣ "ନାରୀ"ର ରଚନା, ନିର୍ଦ୍ଦେଶନା, ତଥା ସଙ୍ଗୀତ ନିର୍ଦ୍ଦେଶନା ଦେଲେ । ଏହି ଚଳଚ୍ଚିତ୍ରରେ ନାରୀକୁ "ଜାୟା, ଜନନୀ, ଭଗିନୀ"—ଏଇ ତିନି ରୂପରେ ପ୍ରତିପାଦିତ କରାଯାଇଛି । ଦୃଶ୍ୟ ଓ ଅଭିବ୍ୟକ୍ତିରେ ଉପଯୁକ୍ତ ସଂଳାପର ବ୍ୟବହାର ଓଡ଼ିଆ ଚଳଚ୍ଚିତ୍ର ଜଗତରେ ଏଇ ଚିତ୍ର ଏକ ନୂତନ ପରମ୍ପରା ସୃଷ୍ଟି କରି ରାଷ୍ଟ୍ରପତି ପୁରସ୍କାର ଲାଭ କଲା ।

ପରେ ୧୯୬୪ ମସିହାରେ "ଅମଡ଼ା ବାଟ", ୧୯୬୯ରେ "ଅଧିକ ମେଘ", ୧୯୭୨ ରେ "କିଏ କାହାର", ୧୯୭୩ରେ "ଘର ବାହୁଡ଼ା", ୧୯୭୪ରେ "କନକ ଲତା", ୧୯୭୫-୭୬ରେ "କୃଷ୍ଣ ସୁଦାମା" ଚିତ୍ରରେ ସଙ୍ଗୀତ ରଚନା କବିଚନ୍ଦ୍ରଙ୍କର ସଙ୍ଗୀତର ଜନପ୍ରିୟତା, ତାଙ୍କୁ ଚଳଚ୍ଚିତ୍ର ଜଗତରେ ଅମର କରି ରଖିବ

ସେ ଯାହା ହେଉନା କାହିଁକି, କବିଚନ୍ଦ୍ର କାଳୀଚରଣଙ୍କ ସଙ୍ଗୀତରେ ବୌଦ୍ଧିକ ସମ୍ଭାର ଆମେ ନ ପାଇଲେ ମଧ୍ୟ ହୃଦୟର ଲଳିତ

ଆବେଗ ପାଇବା । ଯୁକ୍ତିଯୁକ୍ତ—ଅତି ମଟାଣିଆ ଶୈଳୀରେ ସେ ସିଦ୍ଧହସ୍ତ ।

ସେ ଗତ ଜାତି-ସ୍ୱାଭିମାନର ଏକ ବଳିଷ୍ଠ ସ୍ୱାକ୍ଷର । ଓଡ଼ିଶା ଇତିହାସରେ ଏକ ଅପ୍ରତିଦ୍ୱନ୍ଦୀ ଅଧ୍ୟାୟ ।

ସେ ଏକାଧାରରେ ସାହିତ୍ୟିକ, କବି, ଲେଖକ, ନାଟ୍ୟକାର, ସୁଗାୟକ, ଚଳଚ୍ଚିତ୍ର ନିର୍ମାତା, ନିର୍ଦ୍ଦେଶକ, ସଙ୍ଗୀତ ନିର୍ଦ୍ଦେଶକ, ପ୍ରାଚୀନ କାବ୍ୟ ରସିକ ଏବଂ ସର୍ବୋପରି ଜଣେ ପ୍ରତିଭା ପୂଜକ ।

ଏ ବୟସରେ ମଧ୍ୟ ତାଙ୍କର ଯୁବସୁଲଭ ବ୍ୟବହାର ଓ ଆଦର ଦେଖି ଏକା ମୁଁ ନୁହେଁ, ଯିଏ ତାଙ୍କର ସାନିଧ୍ୟ ଲାଭ କରିଛି – ସେ ମୁଗ୍‌ଧ ଏବଂ ବିସ୍ମିତ ।

—*—

# ଓଡ଼ିଶା ସଂସ୍କୃତିର ଶରଶଯ୍ୟା

ଶ୍ରୀ ହେମନ୍ତ କୁମାର ଦାସ

କଟକ ସହରର ଏକ ଅଖ୍ୟାତ ପଡ଼ାର ଦଦରା ଖଞ୍ଜା ଭିତରେ ବୟସ ଝିଞ୍ଜରା ଯେଉଁ ଶୀର୍ଣ୍ଣ ଅସହାୟ ମୂର୍ତ୍ତିଟି 'କ୍ଷୁଧିତ ପାଷାଣ'ର ନିଃସଙ୍ଗ ନାୟକ ଭଳି ଜୀବନ ନାଟକର ଶେଷ ଅଙ୍କରେ ଅଭିନୟ କରି ଚାଲିଛନ୍ତି ସେ ଓଡ଼ିଆ ଜାତିର "କବିଚନ୍ଦ୍ର" ବୋଲି, ଆପଣ କଣ ବିଶ୍ୱାସ କରି ପାରିବେ ? ଆପଣ କ'ଣ ବିଶ୍ୱାସ କରିପାରିବେ ଯେ ମୃତ୍ୟୁପଥର ଯାତ୍ରୀ ସେଇ ଦୟନୀୟ ମଣିଷଟି, ମନ୍ଦିର ଗାତ୍ରର ଶିଳା-କନ୍ୟାମାନଙ୍କ ନୃତ୍ୟନ୍ତ ପଦରେ ନୂପୁର ନିକ୍ୱଣ ସୃଷ୍ଟି କରିଥିବା, ଲଳିତକଳା ସାମ୍ରାଜ୍ୟର ମୁକୁଟବିହୀନ ଚକ୍ରବର୍ତ୍ତୀ "କବିଚନ୍ଦ୍ର କାଳୀଚରଣ" ? କରି ପାରିବେ ଆପଣ କଳ୍ପନା ଯେ ସାମାନ୍ୟ ପଥ୍ୟ, ଔଷଧ ଆଉ ଆନ୍ତରିକ ସେବା ବିନା ତିଳ ତିଳ କରି ମୃତ୍ୟୁକୁ ଆଲିଙ୍ଗନ କରୁଥିବା ଅଶୀବର୍ଷର ଗଳିତ-ଦନ୍ତ, ଲୋଳିତ ଚର୍ମ ସେଇ ବୃଦ୍ଧ, ଦିନେ ବାଙ୍କୀ ଦାଣ୍ଡରେ ରାମନ'ମୀ ମେଳାରେ ବନବାସୀ ରାମର ଅଭିନୟକରି ସହସ୍ର ଦର୍ଶକ ହୃଦୟରେ ଶୋକୋଚ୍ଛ୍ୱାସ ସୃଷ୍ଟି କରିଥିବା, ଲାବଣ୍ୟମୟ ତରୁଣ କାଳୀଚରଣ ? ବିଶ୍ୱାସ କରନ୍ତୁ ବା ନକରନ୍ତୁ, ସେ ବିଷ୍ଟୁରଟି ଏ ସବୁ କିଛି ଭାଗ୍ୟର କି ବିଡ଼ମ୍ବନା ! ବିଧିର କି କ୍ରୂର ପରିହାସ । !! ଜୀବନର ଏକକ ତିକ୍ତ ସତ୍ୟ !!!

ଦୀପ ଲିଭି ଲିଭି ଆସିଲାଣି । ଆଉ ଅଳ୍ପ କେଇଟା ମୁହୂର୍ତ୍ତପରେ ଦପ୍ ଦପ୍ କରୁଥିବା ସେ ଦୀପଶିଖା, ସବୁଦିନ ପାଇଁ ଲିଭିଯିବ । ଜାତିର ଉତ୍‌ଥାନ ପାଇଁ ନିଜର ବିଶାଳ ସମୃଦ୍ଧିକୁ ଉଜାଡ଼ି ଦେଇଥିବା 'ମଧୁବାରିଷ୍ଟର'ଙ୍କୁ, ତାଙ୍କର ଜୀବଦ୍ଦଶାରେ ଯଥାଯୋଗ୍ୟ ସମ୍ମାନ ଦେଇ ନ ପାରି ଯେଉଁ ଜାତି କଳଙ୍କର ଟୀକା ଘେନି ସାରିଛି, ସେ ଜାତି ଲଲାଟରେ ହୁଏତ ଆଉଏକ କଳଙ୍କର ଦାଗ ଲାଗିଯିବ । ଶାପଗ୍ରସ୍ତ ଏ ଜାତିର କୁମ୍ଭକର୍ଣ୍ଣ ନିଦ୍ରା ସତେ କଣ ଭାଙ୍ଗିବ ନାହିଁ ?

ହୁଏତ ନବବର୍ଷକୁ ସ୍ୱାଗତ କରୁଥିବା ଆଳରେ "ମଧୁସ୍ମୃତି-କବିତା ପାଠୋତ୍ସବ" କରି ନିଜକୁ କବି ତାଳିକାଭୁକ୍ତ କରିବା ପାଇଁ

ବ୍ୟଗ୍ରଥିବା ବନ୍ଧୁମାନଙ୍କ ଲେଖନୀ 'କବିଚନ୍ଦ୍ର'ଙ୍କ ଅବର୍ତ୍ତମାନରେ ଧନ୍ୟ କେଇଟା ପାଇଁ ବେସୁରା ରାଗିଣୀ ତୋଳିବ । ଶତାଧିକଶାସ୍ତ୍ରୀ ପୃଷ୍ଠ-ପୁଚ୍ଛାଦିତ ମହାଯାତ୍ରୀ କାଳୀଚରଣଙ୍କ ଫଟୋଚିତ୍ରରେ ସ୍ଥାନୀୟ ସମ୍ବାଦପତ୍ର ମାନଙ୍କର ସମ୍ମୁଖ ପୃଷ୍ଠା ଦୁଏତ ମଣ୍ଡିତ ହେଉଯିବ । ଶୋକବାର୍ତ୍ତା ପ୍ରକାଶରେ ଆକାଶବାଣୀ ଓ ସମ୍ବାଦ ପତ୍ର ଧନ୍ୟ କେଇଟା ପାଇଁ ମୁଖର ହୋଇ ଉଠିବେ । (ଆଉ ସେକେଟ ରୁଦ୍ର ଚରଣ ମହାନ୍ତି ଜଣାଇଛନ୍ତି ଯେ··· ଅବଶ୍ୟ ଆଉ ପ୍ରକାଶ ପାଇବ ନାହିଁ) । ତାପରେ ; ତାପରେ ଦଶାହ ଉତ୍ସବର ଗତାନୁଗତିକ ବକ୍ତୃତା ମାଳା ଓ ପ୍ରବନ୍ଧ ପ୍ରକାଶନ । ତାପରେ କବିଚନ୍ଦ୍ରଙ୍କ ବାର୍ଷିକ ଶ୍ରାଦ୍ଧୋତ୍ସବ, ଇତ୍ୟାଦି, ଇତ୍ୟାଦି, ହାୟ, କି ପ୍ରବଞ୍ଚନା ସତେ !

ସେହି ବେଳରେ ନିଶାନ୍ତ ଆକାଶ ତଳୁ ଚମ୍ପୂ ଓଡ଼ିଶୀର ଓସ୍ତାଦୀ କଣ୍ଠରେ କବିଚନ୍ଦ୍ରଙ୍କ ଅଶରୀରୀ ଆତ୍ମା ଯଦି ଗାଇ ଉଠନ୍ତା ରଘୁନାଥଙ୍କର ସେହି ଚିର ଉସମସ୍ତ ପଦଟି !

"ଜୀବନେ ଯାରେ ତୁମି ପାଏନା ଭାଲୋ
ମରନେ ତାରେ କମା ଦାଓ ଗୋ ଫୁଲ ।"

ତଥାପି କଣ ଏ ଅପଦାର୍ଥ, ଅଭିଶପ୍ତ ଅପୋଗଣ୍ଡ ଜାତିଟା କିଛି ବୁଝନ୍ତା ! ଧନ୍ୟ ଏ ଜାତି, ଧନ୍ୟ ଏ ଓଡ଼ିଆର ସାହିତ୍ୟ ସଂସ୍କୃତି ।

ଲଳିତ କଳାର ଅଭ୍ୟୁତ୍ଥାନ ଓ ପ୍ରସାର ପାଇଁ ବଜେଟରେ ଅର୍ଥ ବ୍ୟବସ୍ଥା କରି ଏ ଜାତିର ସରକାର ଆତ୍ମ ସନ୍ତୋଷ ପାଏ । ସଙ୍ଗୀତ ନାଟକ ଏକାଡେମୀର କର୍ମକର୍ତ୍ତାମାନଙ୍କୁ ରାଜକୀୟ ସମ୍ବର୍ଦ୍ଧନା ଦେଇ ଅନୁଷ୍ଠାନର କର୍ମଚାରୀମାନଙ୍କର ବେତନ ଭତ୍ତା ହାର ବୃଦ୍ଧି କରି ଏ ଜାତିର ସରକାର କଳା ସଂସ୍କୃତି ପ୍ରତିଭାର କର୍ତ୍ତବ୍ୟ ସମ୍ପାଦନ କରେ । କିନ୍ତୁ ଏଣେ ଯେ କଳା, ସଂସ୍କୃତି, ସଙ୍ଗୀତ ନାଟକର ଜୀବନ୍ତ ଦେବତା "କବିଚନ୍ଦ୍ର କାଳିଚରଣ" ନିଃସ୍ୱ ଅବସ୍ଥାରେ ଔଷଧ ଟିକିଏ ନ ପାଇ ଛିଣ୍ଡା ମସିଣାରେ ଶେଷ ନିଃଶ୍ୱାସ ତ୍ୟାଗ କରୁଛି ! ଥରେ ହେଲେ କେହି ତା ଆଡ଼େ ସତେ ଚାହିଁବେ ନାହିଁ ? ମହାରଥୀ ଭୀଷ୍ମ ସତେ କଣ ଶରଶଯ୍ୟାରେ ପାଣି ଟୋପାଏ ନ ପାଇ ମହାପ୍ରୟାଣ ରଚିବ ! ଏ ଜାତି

କଣ କେବଳ ଦୁର୍ଯ୍ୟୋଧନ ଆଉ ଶକୁନିର ଜାତି ? କେହି କଣ ଜଣେ ହେଲେ ସବ୍ୟସାଚୀ ନାହାଁନ୍ତି ଯେ ସାଂଗ୍ରାମିକ ଗ୍ରାଣ୍ଡିବ, କୁଳବୃଦ୍ଧ ପାଟିରେ ପାଣି ଟୋପାଏ ଦେଇ ତାଙ୍କୁ ଶାନ୍ତିରେ ମରିବାକୁ ଦେଇ ପାରିବ ? ସେତିକ ପାଇଁ ଯେ ସେ ଅପେକ୍ଷା କରିଛନ୍ତି । ବେଳ ଗଡ ଗଡ ହେଲାଣି । ନନ୍ଦଘୋଷରୁ ଅବତରଣ କରି "ଅତସୀ କୁସୁମ ଶ୍ୟାମ ପଦ୍ମାକ୍ଷି ପୀତବାସ" ଧୀର ପଦକ୍ଷେପରେ କୁଳବୃଦ୍ଧର ଶରଶଯ୍ୟା ନିକଟକୁ ଆଗେଇ ଆସିଲେଣି ।

ଏଇ, ଶୁଣ, ଖୁବ୍ ନିବିଷ୍ଟ ଚିତ୍ତରେ କାନ ଡେରି ଶୁଣ । ଅତି କ୍ଷୀଣ ଅସ୍ପଷ୍ଟ ଭାଷାରେ ସେ କଣ କହୁଛନ୍ତି ଶୁଣ ! ଧର୍ମଦ୍ରୋହ ଅପରାଧରେ ମହାଜ୍ଞାନୀ ସକ୍ରେଟିସ୍‌ଙ୍କୁ ପାଷାଣ୍ଡ ରାଜଶକ୍ତି ବିଷ ପାନ କରାଇ ହତ୍ୟା କଲାବେଳେ ସେ ଯାହା କହିଥିଲେ ହୁଏ ତ "ଅସ୍ତଗାମୀ କବିଚନ୍ଦ୍ର" ସେହି ପଙ୍‌କ୍ତିକୁ ଉଚ୍ଚାରଣ କରିବାକୁ ଚେଷ୍ଟା କରୁଛନ୍ତି ....."**I to die, you to live, which is better is know to God.**"

•

କାଳ ସାଗର ପନ୍ତାରେ ଓଡ଼ିଆ ଜାତିର କଳା ସଂସ୍କୃତିର ଜୀବନ୍ତ କୋଣାର୍କ ଆଉ ଅଳ୍ପ ମୁହୂର୍ତ୍ତ ପରେ ବାଲୁକା ଗର୍ଭରେ ଲୀନ ହୋଇଯିବ । ତେବେ ସେହି ନିର୍ଜନ ବେଳାଭୂମିରେ ଝାଉଁଶାଖାର ମର୍ମରରେ ଅନେକ କାଳଧରି ଗୁଞ୍ଜରି ଉଠିବ ସ୍ୱପ୍ନବିଭୋର ପାଷାଣ-କନ୍ୟା ମାନଙ୍କର ନୃତ୍ୟଛନ୍ଦ । ଭୟଙ୍କର ନାହିଁ । ତାହା ଅଶରୀରୀର ଲୀଳା ନୁହେଁ । ତାହା ସତ୍ୟ । ବୀଣାର ମଧୁଛନ୍ଦ ସମାପ୍ତ ହେଲା ପରେବି ବିଭୋର ଶ୍ରୋତା କର୍ଣ୍ଣରେ ସେହି ମଧୁରାଗିଣୀ କିଛି ସମୟ ପାଇଁ ଝଙ୍କାର ତୋଳିଲା ଭଳି ତାହା ସତ୍ୟ ।

ତାର ସେହି ଶେଷ ମୁହୂର୍ତ୍ତରେ ଶରଶଯ୍ୟାଶାୟୀ ବୀରର କାନରେ କହି ଦେବାକୁ ଇଚ୍ଛା ହୁଏ । "କବିଚନ୍ଦ୍ର ଯଦି ପୁଣି କେବେ ଏ ପୃଥିବୀକୁ ମଣିଷ ରୂପରେ ଫେରି ଆସିବାକୁ ଇଚ୍ଛା କରିବ, ମନେ ରଖ, ଏ ଅକୃତଜ୍ଞ ଅଘୋରଣ୍ଡ ଓଡ଼ିଆ ଜାତି ଅଧ୍ୟୁଷିତ ଭୂଖଣ୍ଡରେ କଦାପି ଅବତୀର୍ଣ୍ଣ ହେବ ନାହିଁ । ହେଲେ ତମେ କଣ ମୋ କଥା ମାନିବ ? ଏ ଜାତି ଏ ମାଟି ଯେ ତମର ଅତି ପ୍ରିୟ ! ମହାଭାରତର କୁଳବୃଦ୍ଧ ପିତାମହ ଭଳି

ନିଃସନ୍ତାନ, ନିର୍ଜୀବ୍ୟ ତମେ । ଅପଦାର୍ଥ ହେଲେବି ଏ ଜାତିର କୋଟି ତିଳୋଦକ ତମର ଅବଶ୍ୟ ପ୍ରାପ୍ୟ । ସୂର୍ଯ୍ୟଙ୍କର ଉତ୍ତରାୟଣ ଆରମ୍ଭ ହେଲଣି । ସ୍ୱଗୁଣରେ ତମର ଏ ପ୍ରିୟ ଜାତିକୁ କ୍ଷମା ଦେଇ ଆଶୀର୍ବାଦ ଦେଇ, ମହାଯାତ୍ରା ପଥରେ ପାଦ ଦିଅ । ଯାତ୍ରା ଶୁଭମୟ, ଶାନ୍ତିମୟ ହେଉ । ବିଦାୟ । ନମସ୍ତେ ।

—*—

# ଅଭିମାନ ମୋର–"କବିଚନ୍ଦ୍ରଙ୍କୁ"

**ଶ୍ରୀ ନୃସିଂହ ଚରଣ ସାହୁ**

ସାବିତ୍ରୀଙ୍କୁ ଶହେ ପୁତ୍ର ବର ଦେଇ, ଯମ ରାଜା ସ୍ୱର୍ଗକୁ ବାହାରିଲେ । ହେଲେ, ସାବିତ୍ରୀ ପୁଣି ଯମରାଜାଙ୍କ ପଛେ ପଛେ ଅନୁସରଣ କଲେ । ଯମ ରାଜା ସାବିତ୍ରୀଙ୍କୁ ପୁଣି ଅନୁସରଣ କରିବାର କାରଣ ପଚାରିବାରୁ, ସାବିତ୍ରୀ ଠେକ୍‌ଠୋକ୍ ଯମରାଜାଙ୍କୁ ଶୁଣାଇ ଦେଇଥିଲେ, "ଆପଣ ମୋ ସ୍ୱାମୀ ସତ୍ୟବାନଙ୍କ ପ୍ରାଣ ନେଇ ଯାଉଛନ୍ତି, ମୋର ଶହେ ପୁଅ ହେବ କପରି" ? ଯମ ରାଜାଙ୍କ ଅକଲ ଗୁଡ଼ୁମ୍ ହୋଇ ଯାଇଥିଲା ସେଦିନ, ସାବିତ୍ରୀଙ୍କ ଯୁକ୍ତିର ଯଥାର୍ଥତା ଥିବାରୁ ସେ ତାଙ୍କର ପରମ ଆରାଧ୍ୟ ସ୍ୱାମୀ ସତ୍ୟବାନଙ୍କୁ ମରଣ ମୁଖରୁ ବଞ୍ଚାଇ ପାରିଥିଲେ ।

କବିଚନ୍ଦ୍ର, ୧୯୬୮ ମସିହା ଏପ୍ରିଲ ମାସ ଆଠ ତାରିଖ ଦିଲ୍ଲୀ ଦରବାରରେ, ଠିକ୍ ସାବିତ୍ରୀଙ୍କ ଭଳି—ତାଙ୍କ ଜୀବନର ଓ ଓଡ଼ିଆ ଜାତି ପ୍ରତି ବିରାଟ ବିପଦର ସମ୍ମୁଖୀନ ହୋଇଥିଲେ । ତାହା ହେଉଛି, ଓଡ଼ିଶୀ ନୃତ୍ୟକୁ ସର୍ବ ଭାରତୀୟ ସ୍ତରରେ ସ୍ୱୀକୃତି ଦେବା ସମ୍ବନ୍ଧରେ । ଶେଷରେ ବହୁ ବାଧାବିଘ୍ନ ସତ୍ତ୍ୱେ, ଦିଲ୍ଲୀ ଦରବାର ଓଡ଼ିଶୀ ନୃତ୍ୟକୁ ଶାସ୍ତ୍ରୀୟ ନୃତ୍ୟ ରୂପେ ସ୍ୱୀକୃତି ଦେଲା । କବିଚନ୍ଦ୍ର ଓ ତାଙ୍କ ସାଥୀମାନେ ମନ ଆନନ୍ଦରେ ଓଡ଼ିଶା ଭୂଇଁକୁ ଫେରିଲେ ।

ଯମରାଜା ସତ୍ୟବାନଙ୍କ ପ୍ରାଣ ନେଇ ଯେପରି ସାବିତ୍ରୀଙ୍କୁ ଶହେ ପୁତ୍ର ବର ଦେଇ ଠକିବାକୁ ବସିଥିଲେ, ଠିକ୍ ସେହିଭଳି ଭାରତ 'ସଙ୍ଗୀତ ନାଟକ ଏକାଡେମୀ' ଓଡ଼ିଶୀ ନୃତ୍ୟକୁ ଶାସ୍ତ୍ରୀୟ ନୃତ୍ୟ ରୂପେ ସ୍ୱୀକୃତି ଦେଇ, କବିଚନ୍ଦ୍ରଙ୍କୁ ତଥା ଓଡ଼ିଶାବାସୀଙ୍କୁ ଆଜି ପର୍ଯ୍ୟନ୍ତ ଠକି ଆସିଛନ୍ତି ବୋଲି ମୁଁ ମନେ କରୁଛି । ନୃତ୍ୟର ଯେଉଁ ଚାରୋଟି ଅଙ୍ଗ, ତାହା— ଆଙ୍ଗିକ, ବାଚିକ, ଆହାର୍ଯ୍ୟ ଓ ସାତ୍ତ୍ୱିକ । କେବଳ ଓଡ଼ିଶୀ ନୃତ୍ୟରେହିଁ ଦେଖାଯାଏ । ଅନ୍ୟ ଯେଉଁ ନୃତ୍ୟଗୁଡ଼ିକ ଭାରତ ସରକାରଙ୍କ ଠାରୁ

ସ୍ୱୀକୃତି ପାଇଛି, ଯଥା—ଭରତ ନାଟ୍ୟମ୍, ମଣିପୁରୀ ଓ କୁଚିପୁଡ଼ି, ଏ ନୃତ୍ୟମାନଙ୍କରେ ଏକାବେଳେକେ ନୃତ୍ୟର ସବୁଗୋଟି ଅଙ୍ଗର ପ୍ରୟୋଗ ଦେଖାଯାଏ ନାହିଁ ।

ଓଡ଼ିଶୀ ଗୀତ ନ ଗାଇଲେ ଓଡ଼ିଶୀ ନୃତ୍ୟର ପାଦ ଉଠିବ ନାହିଁ । କେବଳ ଏତିକି ନୁହେଁ, ହିନ୍ଦୁସ୍ଥାନୀ ଓ କର୍ଣ୍ଣାଟକୀ ସଙ୍ଗୀତ ତ ୧୬୮୦ ମସିହାରେ ଦୁଇ ଭାଗ ହେଲା, ହେଲେ ଓଡ଼ିଶୀ ସଙ୍ଗୀତ ଷଷ୍ଠ ସପ୍ତମ ଶତାବ୍ଦୀରୁ ଚାଲି ଆସୁଥିବା ସଙ୍ଗୀତ ଏହାର ପ୍ରମାଣ ଦେବ । ଜୟଦେବଙ୍କ ରଚିତ ଗୀତଗୋବିନ୍ଦ, ଗୀତ ପ୍ରକାଶ, ନାଟ୍ୟ ମନୋରମା, ନାଟ୍ୟ ଶାସ୍ତ୍ର, ସଙ୍ଗୀତ ସରଣୀ ଇତ୍ୟାଦି । ଏଗୁଡ଼ିକ ୧୧ ଶ ଶତାବ୍ଦୀରୁ ୧୭ ଶ ଶତାବ୍ଦୀ ମଧ୍ୟରେ ଓଡ଼ିଆ ପୁଅମାନଙ୍କ ଲେଖନୀରୁ ନିଃସୃତ । ଏହି ଗ୍ରନ୍ଥଗୁଡ଼ିକୁ ପଢ଼ିଲେ ବିଶ୍ୱାସ କରିବେ ଓଡ଼ିଶୀ ସଙ୍ଗୀତ ମଧ୍ୟ ନିଶ୍ଚିତ ଭାବେ ଶାସ୍ତ୍ରୀୟ ନୃତ୍ୟ ।

ହେଲେ ସେତେବେଳେ କବିଚନ୍ଦ୍ର ଓଡ଼ିଶୀ ନୃତ୍ୟର ଜୀବନ ଓଡ଼ିଶୀ ସଙ୍ଗୀତ, ଦିଲ୍ଲୀ ଭବନରେ ଜାଣିଥିଲେ ମଧ୍ୟ, ଓଡ଼ିଶୀ ସଙ୍ଗୀତ ପାଇଁ ଆପତ୍ତି ନ କରି ଫେରି ଆସିଥିଲେ । ତାର କାରଣ—"ଘର ଢିଙ୍କି କୁମ୍ଭୀର ଭଳି । ଏଇ ଓଡ଼ିଆ ପୁଏ ମଧ୍ୟ ସାମାନ୍ୟ ସ୍ୱାର୍ଥ ପାଇଁ ଓଡ଼ିଶୀ ନୃତ୍ୟକୁ ଶାସ୍ତ୍ରୀୟ ନୃତ୍ୟ ଭାବେ ସ୍ୱୀକୃତି ନ ଦେବା ପାଇଁ ନାନା କନ୍ଦଳ ସୃଷ୍ଟି କରିଥିଲେ । ଶେଷରେ ସେମାନେ ପରାଜୟ ସ୍ୱୀକାର କଲେ । ଜୟୀ ହେଲେ କବିଚନ୍ଦ୍ର । ପୃଥିବୀରେ ଶ୍ରେଷ୍ଠ ନୃତ୍ୟ ରୂପେ ଆଜି ଗଣାଯାଉଛି ଓଡ଼ିଶୀ ନୃତ୍ୟ, ସେଥିପାଇଁ ଓଡ଼ିଆର ସମ୍ମାନ ବଢ଼ିଲା ।

ଆଜିର ଏ ପୁଣ୍ୟଜନ୍ମ ତିଥିରେ କବିଚନ୍ଦ୍ରଙ୍କ ପାଆତଳେ ମୁଣ୍ଡିଆ ମାରି ଅଳି କରୁଛି, ତାଙ୍କ ସଂଗ୍ରାମମୟ ଜୀବନର ପରିଣତ ବୟସରେ ମଧ୍ୟ ଏ ଓଡ଼ିଆ ଜାତି ପାଇଁ ତାଙ୍କର ଆହୁରି ଅନେକ କର୍ତ୍ତବ୍ୟ ପାଳନ କରନ୍ତୁ ଓ ଓଡ଼ିଶୀ ସଙ୍ଗୀତକୁ ଶାସ୍ତ୍ରୀୟ ସଙ୍ଗୀତ ରୂପେ ସ୍ୱୀକୃତି ପାଇଁ ଭାରତ ସରକାରଙ୍କ ନିକଟରେ ଯଥାର୍ଥରେ ଦାବୀ କରନ୍ତୁ । "ଚକାଡୋଳା" ତାଙ୍କୁ ଶତାୟୁ କରନ୍ତୁ । ଏତିକି ମୋର କାମନା ।

—*—

# ଅଗ୍ରଜ ଆଚାର୍ଯ୍ୟ କାଳୀଚରଣ

**ଶ୍ରୀ ଅନନ୍ତ ମିଶ୍ର**

ସୃଷ୍ଟିର ସ୍ରଷ୍ଟା ପରମ ପୁରୁଷ ପୁରୁଷୋତ୍ତମ ଶ୍ରୀ ଜଗନ୍ନାଥ ଏହି ସଂସାରକୁ ସୃଷ୍ଟି କରି ଶ୍ରେଷ୍ଠ ଜୀବ ଭାବରେ ମନୁଷ୍ୟକୁ ସ୍ଥାନ ଦେଇଛନ୍ତି । ସଂସାର ପ୍ରକୃତରେ ଏକ ବିରାଟ ରଙ୍ଗମଞ୍ଚ । ପ୍ରତ୍ୟେକ ଜୀବ ବିଶେଷତଃ ମଣିଷ ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ସାଧାରଣତଃ—ବାଲ୍ୟ, ଯୌବନ, ପ୍ରୌଢ଼ ଓ ବାର୍ଦ୍ଧକ୍ୟ ଚାରୋଟି ଅବସ୍ଥାକୁ ଭୋଗ କରେ ଏବଂ ଏହି ଚାରୋଟି ଅଙ୍କର ନାଟକଟି ଶେଷ କରି ଫେରିଯାଏ ।

ବିଶ୍ୱର ଏହି ରଙ୍ଗମଞ୍ଚ ଉପରେ ମଣିଷ ନାନା ପ୍ରକାର ଭାବରେ କର୍ମ କରି ଜୀବିକା ନିର୍ବାହ ତଥା ପରିବାରର ପରିପୋଷଣ କରି ଶେଷ ପର୍ଯ୍ୟନ୍ତ ଜୀବନ ଅତିବାହିତ କରେ । ନାନାଦି କର୍ମ ମଧ୍ୟରେ ନାଟ୍ୟକାର କର୍ମ ଗୋଟାଏ ପ୍ରକୃଷ୍ଟ ପନ୍ଥା । ଏଥିରେ ନାଟ୍ୟକାର ନିଜର ଆତ୍ମ-ସନ୍ତୋଷ ସହିତ ଜନସାଧାରଣଙ୍କର ମନ ତୃପ୍ତି କରିବା ଉପରେ କାର୍ଯ୍ୟ ସମ୍ପାଦିତ ହୋଇଥାଏ । ଅତ୍ୟନ୍ତ ବୁଦ୍ଧିଜୀବୀ ତଥା କଳାକାର ନ ହେଲେ ଉତ୍କୃଷ୍ଟ ନାଟ୍ୟକାର ହେବା ସମ୍ଭବ ନୁହେଁ ।

କବିଚନ୍ଦ୍ର କାଳୀଚରଣ ଏ ଯୁଗର ବିଶିଷ୍ଟ ନାଟ୍ୟକାର । ତାଙ୍କର ଜନ୍ମ ୧୮୯୮ ମସିହା ବଉଳ ଅମାବାସ୍ୟା ପୁଣ୍ୟ ତିଥିରେ । ସେ ଆଜି ବର୍ତ୍ତମାନ ଅଣାଅଶୀ ବର୍ଷ ବୟସରେ ପଦାର୍ପଣ କରୁଛନ୍ତି । ଏହି ଅଣାଅଶିଟି ବର୍ଷ ମଧ୍ୟରେ ବିଂଶ ଶତାବ୍ଦୀର ବହୁ ପରିବର୍ତ୍ତନ—ସାମାଜିକ, ଅର୍ଥନୈତିକ ରାଜନୈତିକ ଇତ୍ୟାଦିରେ ହୋଇ ଯାଇଛି । ଇତି ମଧ୍ୟରେ ନାଟକ ଯୁଗର ମଧ୍ୟ ବହୁ ପରିବର୍ତ୍ତନ ଘଟିଛି । ବିଶେଷତଃ ଦୁଇ ଦୁଇଟି ମହାସମର ଇତି ମଧ୍ୟରେ ଅତିବାହିତ ହୋଇ ଯାଇଛି । ଜନନୀ ଭାରତ ପରାଧୀନ କବଳରୁ ମୁକ୍ତ ହୋଇ ସ୍ୱାଧୀନ ହୋଇଛି । ମାନଚିତ୍ରର ବହୁ ରୂପ-ରଙ୍ଗ ପରିବର୍ତ୍ତନ ହେବା ସଙ୍ଗେ ସଙ୍ଗେ ବହୁ ଗୁରୁତ୍ୱପୂର୍ଣ୍ଣ ଘଟଣାର ନାଟକୀୟ ଭାବରେ ପରିବର୍ତ୍ତନ ଘଟିଯାଇଛି ।

ବାଲ୍ୟରୁ ଏଯାବତ୍ କବିଚନ୍ଦ୍ରଙ୍କ ଜୀବନ ତରଙ୍ଗାୟିତ ଭାବରେ ନାନା ଦୁଃଖ ଯାତନା କଷ୍ଟ ଘାତ ପ୍ରତିଘାତ ସହ୍ୟ କରି ସୁଦୃଢ଼ ଭାବରେ ସୁଖ୍ୟାତି ସହ ଅତିବାହିତ । ସେ ସାରା ଜୀବନ ନିରଳସ ନିରାଡ଼ମ୍ବର ଜୀବନଯାପନ କରିଛନ୍ତି । ତାଙ୍କର ଧର୍ମବଳ ସହ ମନର ବଳ ମଣିକାଞ୍ଚନ ଯୋଗରେ ଅତିବାହିତ । ନୀଳାଚଳ ପତି ଶ୍ରୀ ଜଗନ୍ନାଥଙ୍କ ନିକଟରେ ନିତ୍ୟ ପ୍ରଣତି କରି ସେ ତାଙ୍କର ଲେଖା ଆରମ୍ଭ କରନ୍ତି । ତାଙ୍କର ଭଜନ ଜଣାଣ ଏହାର ଅକାଟ୍ୟ ପ୍ରମାଣ । କବି ଶ୍ରୀ ଜଗନ୍ନାଥଙ୍କ ଘରର ସେବକ ଭାବରେ ଠାକୁର ରାଜାଙ୍କ ଠାରୁ ଶାଢ଼ୀ ପାଇବା ଅତ୍ୟନ୍ତ ଗୌରବର କଥା । କବିଚନ୍ଦ୍ର ଅଭିମାନରେ ଅଳି କରି ଲେଖିଛନ୍ତି—

"ରୁଷିବାର ମୋର ଅଛି ଅଧିକାର
ବାହା ପିଠି ଏହା କହେ ବାର ବାର
ଜଞ୍ଜାଳିଆ କରି ଜନମ ଦେଲ ତ
କିଏ ସହିବ ମୋ ଦାଉ ?
ପାଦେ ଠେଲି ଦିଅ, ଲୋକ ହସା ହୁଅ
ତୁମ ପିତାପଣ ଯାଉ
ମୁଁ ଯେବେ ତୁମକୁ ବାପ ନ ବୋଲିବି
ତୁମେ ବାପ ହେବ କାହୁଁ
ଜଗତର ପିତା ଜନେ ବୋଲିବାର
ଠେକ ରହିବ କି ଆଉ ?"

କବିଚନ୍ଦ୍ର ଜଣେ ଉତ୍କୃଷ୍ଟ ନାଟ୍ୟକାର ଭାବରେ କେବଳ ଓଡ଼ିଶାର ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ନୁହେଁ—ଜନସାଧାରଣରେ ମଧ୍ୟ ସୁପରିଚିତ । ମଣିଷର ପରମାୟୁ ସୀମିତ—ଏହି ପରମାୟୁକୁ ସମ୍ବଳ କରି ନିଜର କର୍ମ କ୍ଷେତ୍ରରେ କର୍ମକୁଶଳତା ସଂସାରରେ ପରିବେଷଣ କରି ଯଶ ଅର୍ଜନ କରିବା ସହଜ ସାଧ୍ୟ ନୁହେଁ—କିନ୍ତୁ କବିଚନ୍ଦ୍ର ପିଲାଦିନରୁ ତୁଳସୀ ପତ୍ର ପରି ନିଜର ନାଟ୍ୟକାର କଳାକୁ ବିଭିନ୍ନ ବିଭାଗ, ବିଭିନ୍ନ ପରିବେଶ, ବିଭିନ୍ନ ବିଷୟ । ଧର୍ମ, ଦର୍ଶନ, ପୌରାଣିକ, ଆଧ୍ୟାତ୍ମିକ, ସାମାଜିକ, ହାସ୍ୟରସ—ଜନସାଧାରଣଙ୍କ ଆଧୁନିକ ରୁଚି ସମ୍ପନ୍ନ ସରଳ, ସହଜ ସୁନ୍ଦର ଭାବ ଓ ଭାଷାରେ ପରିବେଷଣ କରିଛନ୍ତି । କବିଚନ୍ଦ୍ର ବହୁ ନାଟକର ସ୍ରଷ୍ଟା—ଓଡ଼ିଆ ଭାଷାର ସାହିତ୍ୟ ଭଣ୍ଡାରକୁ ତାଙ୍କର ଦାନ

ଅତୁଳନୀୟ । ଶତାଧିକ ଓଡ଼ିଆ ପୁସ୍ତକର ପ୍ରଣେତା । ଧନ୍ୟ ସେହି ମନର ବଳ, ହାତର ବଳ··· ଧନ୍ୟ ସେଇ କଳ୍ପନା !!

ଓଡ଼ିଶା କଳାର ଦେଶ । ବହୁ କଳାକାରଙ୍କ ଜନ୍ମ ଏଇ ଉତ୍କଳରେ । ଉତ୍କଳ କାରୁକାର୍ଯ୍ୟ ଖଚିତ ଦେବାଦେବୀ ମନ୍ଦିର କେବଳ ଭାରତରେ ନୁହେଁ--ସମଗ୍ର ପୃଥିବୀରେ କୋଣାର୍କ, ଭୁବନେଶ୍ୱର ମନ୍ଦିର ଆଜି ବିଶ୍ୱଖ୍ୟାତ । କଳାସ୍ରଷ୍ଟା ଅନେକ ଅଛନ୍ତି—ଓଡ଼ିଶାରେମଧ୍ୟ ଅନେକ ନାଟ୍ୟକାର ଜନ୍ମଗ୍ରହଣ କରିଛନ୍ତି । କିନ୍ତୁ କେହି ଏକାଧାରରେ, ଚିରଙ୍ଗାପ୍ସିତ ଭାବରେ, ନାନା ବାଧାବିଘ୍ନ ମଧ୍ୟରେ ପ୍ରତିକୂଳ ବାତାବରଣକୁ ସାହସର ସହିତ ସହ୍ୟକରି ଏତେ ଗୁଡ଼ିଏ ନାଟକ ପରିବେଷଣ କରି ପାରିନାହାନ୍ତି । କବିଚନ୍ଦ୍ରଙ୍କର ଏହାହିଁ ବିଶେଷତ୍ୱ ।

ଓଡ଼ିଶାର ଲବ୍ଧ ପ୍ରତିଷ୍ଠ ସାହିତ୍ୟିକମାନଙ୍କ ମଧ୍ୟରେ କବିଚନ୍ଦ୍ର କାଳୀଚରଣ ଅନ୍ୟତମ । ତାଙ୍କର ବିଭିନ୍ନ ସାହିତ୍ୟ ରଚନା ସମୂହ ଭାବରେ ସର୍ବସାଧାରଣ ଏବଂ ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଆଦୃତ । ତାଙ୍କର ଆତ୍ମଜୀବନୀ 'କୁମ୍ଭାର ଚକ' ୧୯୭୭ର ଶ୍ରେଷ୍ଠ ସାହିତ୍ୟ ଭାବରେ ଭାରତ ସରକାରଙ୍କ ପ୍ରତିଷ୍ଠିତ 'କେନ୍ଦ୍ର ସାହିତ୍ୟ ଏକାଡେମୀ'ଦ୍ୱାରା ଉତ୍କୃଷ୍ଟଲେଖା ଭାବରେ ପୁରସ୍କୃତ ହୋଇଛି ।

କବିଚନ୍ଦ୍ର ଓଡ଼ିଶାର ଉତ୍କୃଷ୍ଟ ନାଟୁଆ । ନାଟ୍ୟକାର ଭାବରେ କେବଳ ନାଟକ ରଚନା ଛଡ଼ା ସେ ନିଜେ ରଙ୍ଗମଞ୍ଚରେ ବହୁବାର ଅବତୀର୍ଣ୍ଣ ହୋଇଛନ୍ତି । ବହୁ କଳାକାରଙ୍କୁ ମଧ୍ୟ ନଚାଇଛନ୍ତି । ପୂର୍ବ ପ୍ରଥା ଅନୁସାରେ ଯାତ୍ରାରେ, ନାଟକରେ ପୁରୁଷମାନେ ସ୍ତ୍ରୀ ବେଶରେ ଅଭିନୟ କରିବା ପ୍ରଥାର ସମୂହ ପରିବର୍ତ୍ତନ କରି ସର୍ବପ୍ରଥମେ ନାରୀ କଳାକାରଙ୍କୁ ବହୁ ନାଟକର ଅଭିନେତ୍ରୀ ଭାବରେ ଉତ୍ସାହିତ କରିଛନ୍ତି ।

କବିଚନ୍ଦ୍ର ପ୍ରାୟ ଅଧିକାଂଶ ସଭା ସମିତି ବିଶେଷତଃ ନାଟକ ପରିବେଷଣ—ସାଂସ୍କୃତିକ ସଭାରେ ଯୋଗଦେଇ ସେ ନିଜର ଅନୁଭୂତି ସମ୍ବନ୍ଧେ ବିଭିନ୍ନ ତଥ୍ୟ ପରିବେଷଣ କରନ୍ତି । ବହୁ ସାଂସ୍କୃତିକ ଅନୁଷ୍ଠାନର ସେ ସଦସ୍ୟ । ୧୯୭୫ ମସିହାରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ଆଚାର୍ଯ୍ୟ ଉପାଧିରେ ଭୂଷିତ ହୋଇ ସେ ଗୌରବାନ୍ୱିତ ହୋଇଛନ୍ତି ।

ମଣିଷ ପ୍ରକୃତିରେ ଧର୍ମ ବଳରେ ବଡ଼ ହୁଏ । ଆଧ୍ୟାତ୍ମିକ ଚିନ୍ତାଧାରା ମଣିଷ ମନରେ ଅତ୍ୟନ୍ତ ଆନନ୍ଦ ତଥା ସୁଦୃଢ଼ ମନୋବଳ ଜାଗ୍ରତ କରେ । କବିଚନ୍ଦ୍ରଙ୍କ ମନରେ—ଏକାଧାରରେ ଧର୍ମବଳ, ବୁଦ୍ଧିବଳ, ମନବଳ ସନ୍ନିହିତ । ତେଣୁ ଆଜି ଅଶୀ ବର୍ଷ ବୟସରେ ମଧ୍ୟ ତାଙ୍କର ସ୍ୱଭାବ ସୁଲଭ ଲାସ୍ୟମୁଖ ପ୍ରତି ପଦ କଥାରେ ଅମୃତ ସମ ପରିବେଷିତ । ଆବାଳ ବୃଦ୍ଧ ବନିତାଙ୍କ ସହିତ ସେ ବନ୍ଧୁଭାବରେ ପରିଚିତ ।

ପରିଶେଷରେ ଏତିକି କହିରଖେ କବିଚନ୍ଦ୍ର ମୋର ଅଗ୍ରଜ—ମୁଁ ଅନୁଜ । ତାଙ୍କୁ ଆଶୀର୍ବାଦ କରିବା ମୋ ପକ୍ଷରେ ସମୀଚୀନ ନୁହେଁ । କେବଳ ଜଗତକର୍ତ୍ତା ଜଗନ୍ନାଥଙ୍କ ଶ୍ରୀଚରଣାରବିନ୍ଦରେ ମୋର ପ୍ରଣତି··· ମିନତି - ଶ୍ରୀଜଗନ୍ନାଥ ତାଙ୍କର ମଙ୍ଗଳ କରନ୍ତୁ । ଅଷ୍ଟୋତ୍ତର ଶତ ସମ୍ବତ୍ସର ଜୀବିତ ରହି ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଆଜି ଶତାଧିକ ପୁସ୍ତକ ଦାନ କରି ଏ ଜାତିରେ ଚିରସ୍ମରଣୀୟ ହୋଇ ଅମରତ୍ୱ ଲାଭ କରନ୍ତୁ ।

—✳—

# ଭ୍ରମର ସଙ୍ଗେ ବଜାଏ ବଂଶୀ

• ଶ୍ରୀ ମଧୁ ମହାନ୍ତ

ଭ୍ରମର ସଙ୍ଗେ ବଜାଏ ବଂଶୀ
ଏତ୍ୱିତ ମୋର କାମ ··· ···

× ×

ତୁ ନନ୍ଦ ସୁତ ମୁଁ ରାଜ ଦୁଲାଳୀ
ବଂଶୀ ସିନା ଦେଲା ପରତେ କରି

କାଳୀ ଭାଇ 'କୁମ୍ଭାର ଚକ'ର କଳାକାର ରୂପେ ପୁରସ୍କୃତ ହେବାଲେ ସିନା କିନ୍ତୁ ଆଗରୁ ଏ ଚକକୁ ଦାନ କରି ଦେଇଥିଲେ ଗୁଜୁରାଣ ମେଣ୍ଟାଇ ନପାରି; 'ହାଣ୍ଡି ଖାଏ ବରଡ଼ାକୁ'

ସେ ହେଉ ଓ ସର୍ଭର ବର୍ଣ୍ଣର ସ୍ପୃଷ୍ଟ 'କୁମ୍ଭାର ଚକ'ର ଉତ୍ପତ୍ତି ବା ଉଦ୍ଭାବନତ ମାନବ ସଭ୍ୟତାର ଏକ କାନ୍ତ ପର୍ବ ? ଦେଖନ୍ତୁ ତୋଳିବା ପୂର୍ବରୁ ପାହାଡ଼ରୁ ପଥର କାଟି ଉପରକୁ ଉଠାଇବାକୁ ପଡ଼ିବ । ତେଣୁ ପଥରକୁ ଠେଲି ଉପରକୁ ଉଠେଇବାକୁ ଯାଇ ପଥର ଖସିପଡ଼ି ତା ତଳେ ଯେତେବେଳେ ମଲେ ସେଇଠୁ ବାହାରିଲା ବୁଦ୍ଧି 'ଚକ', ଚକ ଉପରେ ଥୋଇ ଅଚଳକୁ ଟାଣି ନେଲା । ଜଗନ୍ନାଥଙ୍କର 'ରଥ' ଆଉ 'ଚକ' । ···

ମଧ୍ୟ ପ୍ରାଚ୍ୟର ପିରାମିଡ଼ ନିର୍ମାଣ ବେଳରେ ଏ ଚକର ଆବିଷ୍କାର- ତାକୁ ବିଜ୍ଞାନ ରସିକ କବି ଓମର ଖୟାମ କହିଗଲେ ତାଙ୍କର ସଂସାର ଦର୍ଶନର ପ୍ରତୀକ ।

The vitality of a culture depends upon its power integrating and assimil.ti g what it receives from other cultures, that in term depends

on the depth and breadth of its self identification the fundamentals term of human activities is his sign-using ability to choose right type of sign necessary to identify his own cultured heritage and integrate collateral cultures

(Societies and cultures)

ମଣିଷ ପଶୁ ଗୋଟାଏ ସଂକେତ ଧର୍ମୀ ଜୀବ ।
"ମୁଖେ ଯାର ନଥିଲା କ ଭାଷା
ଆଖି ଯାର କହୁଥିଲା କଥା ।"
ଆମ କୋଣାର୍କର ପ୍ରସ୍ତର ନାରୀ କି ?

ସେ ଆଖି ପୁଣି ସ୍ୱର - ରସ - ବନ୍ଧନା । ତାକୁ ଯେ ବେଦରେ 'ସଖ୍ୟା ଶିବାନି ମଧ୍ୱା ମଦେମ ସହନୁ ସମାନାଃ' କହିବେଲେ ସେ ମଦରେ ମାତି ସମାନ ଆନନ୍ଦ ପାଇବାକୁ ... ... ବ୍ରହ୍ମ ପଶିଗଲା ସୁରା ପାତ୍ରରେ— ଶୁଣ୍ଡି ଘରେ ।

ସରସ୍ୱତୀଙ୍କ ଉପାସକ ଯେତେବେଳେ ଅଣ୍ଟାରେ ନୋଟ ବଣ୍ଡା ମାରି ସାତତାଳ ପଙ୍କ ତଳେ ମନଭ୍ରମରରେ ଚଞ୍ଚଳା ଲକ୍ଷ୍ମୀଙ୍କୁ ଉଦ୍ଧାର କରିବାକୁ ବାହାରିଲେ ତାଙ୍କର ସେହି କାଞ୍ଚନ କୌଳୀନ୍ୟ ହାରିଗଲା ମାଟି ଚଷା ଲଙ୍ଗଳ ମୂନରେ, ପଥର ବନ୍ଧାଣୀର କହାଣ ମୂନରେ । ତାର ସାକ୍ଷ୍ୟ ନୟାଗଡ଼ର ଯଦୁମଣିଙ୍କଠାରୁ ପୁଷ୍ପ ବେଣୁପଦା ଗାଦର—

"କୁଞ୍ଜ ଜନେ ଜଗନ୍ନାଥ ନ ହେବ ଗୋସାଇଁ
× × ×
ଧୂପ ବୋଲି ମଣ୍ଡ ଦେବେ କଅାଁ ଖୁଣ୍ଟା ଧୂଆଁ ।"

ଆମ୍ଭି ସୂତାର ଏ ଚେତାବନୀ ସଙ୍ଗେ ସେହି ନୟାଗଡ଼ରୁ ଭଞ୍ଜକବିଙ୍କ "ବଜାର ବୋଲି" ର ସେତକ—

'କାପୁଡ଼ ବାମାକୁ କେ ବୋଲଇ ଛୋଉ
ବସନ ଫିଟାଇ ଦେଖା ... ... '

ନମ୍ପାଗଡ଼ରୁ ସେ ପାଠ ଯାଇ ପଶିଲ ଡେ଼ଲଙ୍ଗ ବେଣୁପଦା ଗାଦ୍ଦର "ଫୁଲ ଫୁଟି ଯାଏ ଝଡ଼ ଫଳ ହୁଏ ଅଗାଡ଼ ... ... ଧନ୍ଦା କଲ ଲୋକେ ବଦନ ନପାଇ ପଳାଅନ୍ତ ଘର ଛାଡ଼ ।"

ତାଙ୍କେ ବାଟ ବ୍ରାହ୍ମଣ ଶାସନର ଦାସ ଆପଣେ—"ସୃଷ୍ଟେ ବେପାଗ୍ର ବୁଦ୍ଧିକୁ ନଜାଣି ଆପୁ ଖାଇ ମଡ଼ା ପାଲଟିଲୁଣି ... ଘର ଧନକୁ ପର ହାତେ ଦେଇ ଅଭାବରେ କଲବଲଟି ହୋଇ ।"

ଏଥିକୁ ଉପାୟ ?

ସେ ପ୍ରଶ୍ନର ଉତ୍ତର ତାଙ୍କର ସାଙ୍ଗ ଦାର୍ଶନିକ ମଳକଣ୍ଠଙ୍କ "ଚକୋଣାର୍କେ" କାବ୍ୟରେ—

"କାର୍ଣ୍ଣିର କଟକ କାଞ୍ଚନ ମେଦନୀ
ମିଳାଇ ମଣିଲ ପୂଣ୍ୟ ଉତ୍କଳ
ଲକ୍ଷ୍ମୀ ସରସ୍ୱତୀ ସପତ୍ନୀ ଭାବ
ଭୁଲନ୍ତ ଏଠାରେ କରନ୍ତ ଗେଲ ।"

ଏବଂ ଏଇ ଦୁଇ ବ୍ରାହ୍ମଣ ଓ କୃଷକର ସଭ୍ୟତା ମଝିରେ ବିଶ୍ୱନାଥ ମୁଣ୍ଡିଆର ବୌଦ୍ଧ-ମାଧମିକ ଦାର୍ଶନିକ — ତର୍କ ପୁଙ୍ଗବ ଆଗୃର୍ଯ୍ୟ ଦଙ୍ଗନାଗ !

ତାଙ୍କର ପୁଣି ଶିଷ୍ୟ ହୋଇଥିଲେ ପୃଷ୍ଟ ରଜାଙ୍କ ତତ୍କାଳୀନ ମନ୍ତ୍ରୀ ।

'କାଲି ଯା ଦୂରରୁ ସଖୀ
କଳନା କଲ ମୋ ଆଖି
କଳା ଇନ୍ଦ୍ରବର ଆରଣ୍ୟରେ ... ..."

କହେଲେ—

'କାନ ଭିତର ଦେଇ ମରମେ ପଶିଲ ଗୋ'

ଏଠା ଭଲ ବାଲି, ପାଣି, ବଣ, ପବନର ଏଇ ଅନାହତ ଧ୍ୱନି, ଆଜ କେଉଁଠି ଅଛୁ କି ? ବା 'ମୋର କାହା ପ୍ରତି କଣ କରିବାର ଅଛୁ' ?

(ଓଡ଼ିଆ ସାହିତ୍ୟର କ୍ରମ ପରିଣାମ — ନୀଳକଣ୍ଠ ଦାସ, — ପୃଷ୍ଠା ୨୩୦)
ଓଡ଼ିଆଙ୍କ ବଜ୍ର ବୌଦ୍ଧ — ପ୍ରାର୍ଥନା ଆଉ କେଉଁଠି ଅଛି କି ?

ବା—

"କୋନ୍ ରେକ୍ ସଚ୍ଚା ହୈ ଦିଲ୍ ମେ ଯବ୍ ଚଲ୍ ଉଠୈ, ବାତ୍-ଆପ୍ ନେ ଉକାମ୍ ଟେକ ସଥ୍ ······"
('ସତ୍ୟ ଚଉରା' ସମାଧି ପୀଠରେ ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁଙ୍କ ସ୍ୱରଚିତ)

ଗୋପବନ୍ଧୁଙ୍କ ସୁଆଣ୍ଡୋ ଖାଁଉ ଚଷା ବେଣ୍ଟପଦା ଗାନ୍ଧର ମହନ୍ତ। ଭୂଗୋଳ ଓ ଇତିହାସର ଏଇ ସଂଯୋଗକୁ ବୁଝିଲେ ଯିନା Basic Social and Ethical ସ୍ୱ ଧର୍ମ ନଦେଖିଲେ ମଧ୍ୟ ଅଲୌକିକତା, ଅଦୃଶ୍ୟ ଈଶ୍ୱର ନାମରେ ବଞ୍ଚିତ ପାଉଁଶ ବଣ୍ଟନ। ଦକ୍ଷିଣା ଓ ଦାନର କୀର୍ତ୍ତନ ···

ଓମର ଖୟାମଙ୍କ 'କୁମ୍ଭାର ଚକ' ଓ ଆଦିବାସୀ ଶବରଙ୍କ ଦାରୁ ଦେବତା (ବେଦାନ୍ତ ବୃକ୍ଷଙ୍କ ପ୍ରବନ୍ଧ ପରିଷ୍କୃତ) ର ଏ କ୍ରମଚୀତକୁ ଅନ୍ୱେଷଣ କଲେ ଯିନା ଓଡ଼ିଆ ସଂସ୍କୃତିର ଅମ୍ଳିକରଣ କ୍ରେଇ ଚିହ୍ନାଠ ମିଳିବ ।

ଆଜ ଯିଏ ପ୍ରାଚେସା ଚୋଳ ଜଗନ୍ନାଥଙ୍କ ନାଁରେ ଦକ୍ଷିଣା ଆଦାୟ କରୁଛନ୍ତି ସେ କଣ ନାନକ—କବୀର—ଦାଦୁ— ସାଲବେଗଙ୍କ ଭଳି ମୋଚ—ଚନ୍ତୀ— ଯବନ ଅଜାତିଙ୍କୁ ଜଗନ୍ନାଥଙ୍କ ପ୍ରଭାବରୁ ବାରଣ କରି ପାରିଛନ୍ତି କି ? ସଂସ୍କୃତିର ଏଇ ବକ୍ରତାକୁ ରବୀନ୍ଦ୍ରନାଥ ସାକ୍ଷ୍ୟ ଦେଇ ଯାଇଛନ୍ତି । ଠାକୋର, ରାଜବାଡ଼ିର ଦରୁଆନ୍ ଆସିଥିଲା ଜଗନ୍ନାଥ ଦର୍ଶନରେ । ପଣ୍ଡା କହିଲେ, ଗୋଟାଏ ଫଳ ଦାନ କରିବାକୁ ହେବ ଜଗନ୍ନାଥଙ୍କୁ — ଯେଉଁ ଫଳକୁ ଆଉ ଦାତା ଖାଇବ ନାହିଁ । ଦରୁଆନ୍ ଜଣକ ଭାବିଚିନ୍ତି ଦାନ କଲା ବଲିତ ବାଇଗଣ ଯାହା ଅପ୍ରୟୋଜନୀୟ···

ଗାନ୍ଧୀ—ମାର୍କସ୍—ମାଓ ଏଇ ତିନୋଟି ଭିତରେ ଯେଉଁ ଭାର-ସାମ୍ୟ କେନ୍ଦ୍ର, ଯାହାକୁ ଯେଣି, ଖୁଣ୍ଟ, ବା ଗଣ୍ଠି ବୋଲି କହିବୁ (ନାଦ ମୁଣ୍ଡ ଖାଚନ୍ଦନ ··· ··· ଦ୍ରେମେ ବୋଲ ଗାବଧନ) ତାକୁ ଯେତେ

ଟିଁଘୋଷିଲେ ବି ଜନତା ଶାସନର ମାଧ୍ୟମିକ ପନ୍ଥାରେ ଭୂବ ପ୍ରତିଷ୍ଠାଙ୍କୁ ନ ଦେଖିଲେ ବି ଅଧ୍ୟାପକ ଦେବୀ ପ୍ରସାଦ ଚଟ୍ଟୋପାଧ୍ୟାୟଙ୍କ ସଦ୍ୟ ପ୍ରକାଶିତ 'ଭାରତ ଦର୍ଶନ'ରେ କଣ ଜୀବିତ କଣ ମୃତ ଗବେଷଣା ଗ୍ରନ୍ଥର ପୃଷ୍ଠା ୩୧କୁ ଟି ଉତାଇ ଦେଇ ହେବନ ।

ଦେବୀ ବାବୁ ଆର୍ଯ୍ୟପୂର୍ବ ବଙ୍ଗନାଗଙ୍କୁ ଯେତେ ଅଣ ଓଡ଼ିଆ ବୋଲି କହିଲେ ମଧ୍ୟ ତାଙ୍କର ପ୍ରାଚୀନ ଭାରତରେ 'ବିଜ୍ଞାନ ଓ ସମାଜ' ଶୀର୍ଷକ ଗବେଷଣା ଗ୍ରନ୍ଥରେ ଯେଉଁ ଆୟୁର୍ବେଦ ବିଜ୍ଞାନର ଅନ୍ୱେଷଣ କରିଛନ୍ତି ତାହାର୍ଦ୍ଧି ଯେ ଏଇ ବିଶ୍ୱନାଥ ମୁଣ୍ଡିଆ ପାଖ ବଗଳ ଗାଁର ବଠୂଆ ବଇଦଙ୍କ ଜଜମାନ ବୃତ୍ତିରେ ଆଜିବି ପ୍ରତ୍ୟକ୍ଷ –

'କାଟିଲି ବାଉଁଶ ଲେ ଚଟିରିଲି କଣି ... '

ସେ ପ୍ରାଣରସକୁ ଲକ୍ଷ୍ମଣ ମହାପାତ୍ର, ଡଃ କେ. ଏସ୍. ଆର୍. ମୂର୍ତ୍ତି କମ୍ବା ଡଃ ମଧ୍ କାନୁନ୍‌ଗୋ ନକଲେ ଡଃ ନୀଳକଣ୍ଠ ରଥ ଓ ଡଃ ପ୍ରଶାନ୍ତ ପଟ୍ଟନାୟକତ ଅଛନ୍ତି ।

ସେଥିଲାଗି ଶୁକ ଦେଇ ବାଙ୍କି ଗଢ଼ା ଜନ୍ମିତ ଦାରୁ ଦେବତା ବେଡ଼ା ପ୍ରତିପାଳିତ କାଳୀ ଚରଣଙ୍କ 'କୁମ୍ଭାର ଚକ'ର ମହିମାକୁ ଫିଟାଇ ଫୁଟାଇବା କାମ ରହିଲା ଏ ମାଟିର ଉତ୍ତର ପୁରୁଷଙ୍କ ଜିମା ।

ମଧ୍ୟ ପ୍ରାଚ୍ୟର ପ୍ରୟୋଜନ ପୂରଣ ପାଇଁ ଯେଉଁ ଚନ୍ଦର ଆୟୋଜନ ସେ ସଙ୍କେତ କେମିତି ଯାଇ ଜଗନ୍ନାଥଙ୍କ ହସ୍ତରେ ଚନ୍ଦ୍ରେଇ ନନ୍ଦକୁ ନାଗିଲା ସେ କମ୍ବଦନ୍ତୀର ଗଜ ଉଦ୍ଧାରଣ ଠାରୁ ମାଳଶ୍ରୀ ଯାଏ ... ... ହାଫିଜ୍ ଖାଁଙ୍କ କଣ୍ଠରେ ପୁରାଇ ଚନ୍ଦ ଉଡ଼ାଇଲରେ ବୋଲି ପ୍ରାର୍ଥନାରେ ସାକ୍ଷୀତ ।

ପାରସ୍ୟର ଜୋରାଷ୍ଟ୍ରିଆନ୍ ଧର୍ମର ମିତ୍ର ବରୁଣ ପୂଜା ଯେ ଆସି ମୈତ୍ରୀ ଦେବ ଜଗନ୍ନାଥରେ କେତେ ପଶିଲା ସେ କିଏ ଧରି ଜଗନ୍ନାଥ ବଳରାମ ଦାସଙ୍କ ଠାରୁ ଗୋପବନ୍ଧୁ, ନୀଳକଣ୍ଠଙ୍କ ଯାଏ ପଞ୍ଚସଖାଙ୍କ ସାଧନା ଯେ ସତ୍ୟ ନାହିଁ ତା'ର ପ୍ରମାଣ ଡଃ ରସେଲ ହାନାଇଙ୍କ ସଦ୍ୟ ପ୍ରକାଶିତ ପାର୍ସିଆନ୍ ମାଇଥୋଲଜି ନାମକ ଚାର୍ଟର ଗବେଷଣା ଗ୍ରନ୍ଥରେ !

### ପ୍ରାକ୍ - ବୈଦିକ 'ଯେରଷ୍ଟ୍ରୋଶିଏନ୍ ପ୍ରାର୍ଥନା –

I am come to thee as my god, to worship thee as I worship mithra and I will be as thau shalt determine. For thou art my destiny and my fate (Dio cassius 63. 10) persian mythology by John Rossel.

ସେ ମୂଳକୁ ନଖୋଳିଲେ ଭାରତ ରତ୍ନ ଡ଼ଃ ଭଗବାନ ଦାସଙ୍କର ଏ ପଦଟିକୁ ଅସ୍ୱୀକାର କରିପାରିବେନି—

"Orissa is justly celebrated for its magnificent Buddha, Sakta. Vaishnab and Saura manuments as also for its philosophical works supporting the ism of the Chaitanya and for the continuance of the Buddhist tradition in a veild manner in Religions and social practices (The cultural Heritage of India, Vol. 4. Page 4)

କୋଣାର୍କର ଧର୍ମପଦ ଠାରୁ ଜଗନ୍ନାଥଙ୍କ ମୂର୍ତ୍ତି ସ୍ତମ୍ଭ ଯାଏ ସୂର୍ଯ୍ୟପୂଜାର ସେହି ପ୍ରାଣ ପ୍ରବାହର ପ୍ରତିଧ୍ୱନି ଶୁଣିଲି ସେଦିନ ଆକାଶ-ବାଣୀରୁ ସୁହୃଦ ଶଚୀ ମିଶ୍ରଙ୍କ କନ୍ୟା ଅନମା କରଙ୍କ କଣ୍ଠରୁ –

"ଗୌରବ ନଥିଲେ ସରସକି ହୁଏ ପ୍ରୀତି
ପରଷ୍ଟୁ ଆଳୀକୁ ଧରି ଶୋଇଗଲେ
ଉଦରକି ହୁଏ ଶାନ୍ତ ?"

କେତେ କୋଟି ଟଙ୍କା ଲଗାଇ କେତେ ବଡ଼ ରାଜଧାନୀ ଗଢ଼ିଲେ ? ସେଇ ମାଟି ତଳେ ପୁଣି ଜଉଗଡ଼ର ଗୁମ୍ଫା ··· ପାଖ ଖଣ୍ଡଗିରି ଗୁମ୍ଫାରେ ଦେଉଁ ଚହଟୁଛି ? ସ୍ୱର୍ଗତଃ ଅଧ୍ୟାପକ ସୁନୀତି ଚଟର୍ଜୀଙ୍କ ଠାରୁ ତାଙ୍କ ଶିଷ୍ୟ ନାରାୟଣ ଗଙ୍ଗୋପାଧ୍ୟାୟଙ୍କ ଯାଏ ପିଟାଇ, ଫୁଟାଇ ଏକା ଓଡ଼ିଆ ସ୍ୱର ଅନ୍ତଃସ୍ୱରବର୍ଣ୍ଣ ରକ୍ଷା କରି ପାରିଛନ୍ତି ବୋଲି ଦୃଶ୍ୟ ଭଜନ ହୋଇଛି···

ତାଙ୍କ ଉପରେତ ଜାପାନୀ ବଣିକଙ୍କ ବୌଦ୍ଧ-ବଜାର । ଯିଏ ଖଣି ବଣ ପାଣି ବଳ ଧନୀ ହେବାକୁ ବସିଛନ୍ତି ସେମାନେ ଜାପାନୀ ଧନ ଓ ଧର୍ମର ସେ ଅନ୍ୱେଷଣକୁ ଅଧ୍ୟାପକ ଚନ୍ଦ୍ର ଦାସଙ୍କ ମହାୟାନ ଧର୍ମରେ ନମାନଲେ ଡଃ ଚେଜାଙ୍କ ଜାହାଜୀ କୁବେରର ପ୍ରତିଷ୍ଠାକୁ ବେଖାତର କଲେ ··· ··· ଡଃ ନାକମୁରଙ୍କ କଲଚରାଲ ରିଲେସନ ପ୍ରବନ୍ଧଟିକୁ ଅନ୍ତତଃ ପଢନ୍ତୁ । ତେବେ ଯିନା ୭୮ ନବ ବର୍ଷରେ ଆମେରିକା ରାଷ୍ଟ୍ରପତି କାର୍ଟରଙ୍କ ଭାରତ ଆଗମନ ଓ ଜାପାନୀ ସମୃଦ୍ଧିର ପ୍ରତିଯୋଗିତାକୁ ମାଓଙ୍କ ସାଂସ୍କୃତିକ ବିପ୍ଳବ ଓ ଅଧ୍ୟାପକ ମାର୍କସ୍‌ଙ୍କ 'ଖାଉଟି ବଜାର'କୁ ସମନ୍ୱିତ ସନ୍ଧାନ ପାରିବେ ।

ଆମର ସିଦ୍ଧାଚାର୍ଯ୍ୟଙ୍କ ସେ ପଦକ—
"ହାଣ୍ଡିତେ ଭାତ ନାହିଁ—ନିତ ଅତଥି ···"

କାଳୀ ପଟ୍ଟନାୟକେ ପଦ୍ମଶ୍ରୀକୁ ପ୍ରତ୍ୟାଖାନ କରି କବିଚନ୍ଦ୍ରରେ ସନ୍ତୁଷ୍ଟ । କାହିଁକି ?

ବୌଦ୍ଧ ସୂକ୍ତର — 'ଉପାଧି ହିଁ ନର୍ସସନ୍ଦନା' ପୁଣି 'ଉପାଧି ହିଁ ନର୍ସସ ଶୋଚନା ।'

ଓମରଖୈୟାମଙ୍କ 'ସାକି ଓ ସୁରା'ରୁ ପାଇ ଏଜ୍ରା ପାଉଣ୍ଡଙ୍କ 'ଓ ଗଡ୍ ଗିଭ୍ ମି ଏ ଟୋବାକୋ ସପ୍' ଖିଅ ଧରି ଗୁଳାଇଲେ ଯିନା ବଳରାମ ଦାସଙ୍କ "ମୋ ବନା କୁ କାହ୍ନୁ" କମ୍ବା "ଚୋର ଛଡ଼ା ମାନେ ବୋଲନ୍ତି ରଜା, ଚୋର ପରଜାକୁ କଲେଟି ରଜା "

ସେ ଅହଙ୍କାରର କମତ୍ ?
"ତୋ ଚରଣ ଯେ ସେବନ୍ତ
ଦେବେ ତାହାକୁ ବନ୍ଧୁ ତନ୍ତ ।"

ଜଗନ୍ନାଥ ଦାସଙ୍କ ଭାଗବତରେ ସେ କମତ୍ ଆଜ ଆମର କେଉଁ ସାହିତ୍ୟ କର୍ମୀ ବା ବଦ୍ୟା ଦେବୀ ପୁସ୍ତ କେତେ ଦେଉଛନ୍ତି—ଜଗନ୍ନାଥଙ୍କୁ ବେପାର କରି ଭକ୍ତ ଖାଇ ରଜାଙ୍କ ଶାଢୀ, କୁଣ୍ଡଳ ଦେଖାଇ ହେଲେ ଏଇ ମାଟିର ରସ ସଞ୍ଚାର ହେବ ନାହିଁ ·· ତାହା ହେଉ ନାହିଁ । ସାମାଜିକ ସାମ୍ୟ

ଓ ନ୍ୟାୟ ମୈତ୍ରୀ ଓ ସହୃଦୟତା ଫୁଟୁନାହିଁ ବିଦ୍ୱେଷ ବଢ଼ୁଛି । କେଣ୍ଟୁ ପ୍ରାଚୀନ ଓ ନୂତନର ଏଇ ଯୁଗାନ୍ତର ସନ୍ଧି ଲଗ୍ନରେ ବୁଡ଼ା ରସିକ କାଳୀ ଚରଣଙ୍କ ସୋଦର ଭଗ୍ନୀ ଭର୍ତ୍ତା ରୂପେ ମୋର ଜିଜ୍ଞାସା—

ନନ୍ଦିଘୋଷ ରଥୁ ନେଲେ ଘଉଡ଼ି
କେ ଟାଣିବ ତୋର ରଥ ଦଉଡ଼ି

ଯେ ଓଡ଼ିଶୀ ସ୍ୱଧର୍ମ ସ୍ୱାଭିମାନ ପସନ୍ଦ ନହେଲେ କୁବେର ବସ୍ତ୍ର ମାର୍କିନ୍ ମୁଲକର ଥୋମାସ ଯାଫିଂସନଙ୍କର ସେହ୍ୱ ପଦକ ଆମ୍ବ ଟଜା ଭଣୋଇଙ୍କର ନାତି ନାତୁଣୀଙ୍କୁ ସୁଆଗ ଭେଟି !

—"ପୁଅରେ ବାପାରେ … … "

Registance to tyrants to obedience to god.

ଏଥି ଲାଗିତ—"କାଢ ବଳଦ ମୁଁ ବାନ୍ଧିଲି ହଳେ … … ଭୁଷକଲା ଯାଇ ମହେନ୍ଦ୍ର ମାଳେ ।"

# କବିଚନ୍ଦ୍ର

ନରସିଂହ ନନ୍ଦ

ଅନେଙ୍କ ନଭେଇବା କଥା । ୧୯୫୩ ମସିହା ଜାନୁୟାରୀ ୨୬ ତାରିଖ ଭୁବନେଶ୍ୱରରେ ଆଦିବାସୀ ପଡ଼ିଆ ପ୍ରଦର୍ଶନୀ ମଣ୍ଡପରେ ସେଦିନ ଧୂମ୍ ଲାଗିଥାଏ ଆଦିବାସୀମେଳା । ଶ୍ରୀଯୁକ୍ତ ଚିନ୍ତାମଣି ମିଶ୍ର (ଏବେକାର ନବ-ଜୀବନ ପତ୍ରିକାର ସମ୍ପାଦକ) ସେତେବେଳେ ଥାନ୍ତି ଆଦିବାସୀ ଗ୍ରାମମଙ୍ଗଳ ବିଭାଗର ସେକ୍ରେଟାରୀ ଓ ଡିରେକ୍ଟର । ତାଙ୍କର ଅନୁରୋଧରେ କବିଚନ୍ଦ୍ର କାଳିଚରଣ ସେଦିନ ଆସୁଥିଲେ, ଆଦିବାସୀ ପ୍ରଦର୍ଶନୀ ମଣ୍ଡପ ଆଡ଼େ । ନୂଆ କାର୍ ଟିରେ ବସିଥିଲେ ସେତେବେଳର ଅର୍ଥ ବିଭାଗ ଅଣ୍ଡର ସେକ୍ରେ-ଟାରୀ ଶ୍ରୀ ମାଧବ ଚନ୍ଦ୍ର ନନ୍ଦ । ତାଙ୍କ ଝିଅ ବର୍ତ୍ତମାନର ସୁକଣ୍ଠୀ ଗାୟିକା ମୀନାକ୍ଷି ନନ୍ଦ । କବିଚନ୍ଦ୍ର ବି ଥିଲେ ସେ ଗାଡିରେ । ମୀନାକ୍ଷିଙ୍କର ନାଚିବାର ପ୍ରୋଗ୍ରାମ ଥିଲା ସେ ଦିନ ପ୍ରଦର୍ଶନୀ ମଣ୍ଡପ ରଙ୍ଗମଞ୍ଚରେ ।

ମୁଁ ଛିଡ଼ା ହୋଇଥାଏ । ବର୍ତ୍ତମାନର ଭୁବନେଶ୍ୱର ଡ଼ିଭିଜନ ଅଫିସ ନିକଟବର୍ତ୍ତୀ ପଶ୍ଚିମପାଖ ଛକରେ । ଯେଉଁ ରାସ୍ତା କି ରାଜଧାନୀ ଥାନା ନିକଟରୁ ଦକ୍ଷିଣ ଦିଗକୁ ୧ ନମ୍ବର ୟୁନିଟ୍ ହାଇସ୍କୁଲ ଆଡେ ଯାଇଛି ।

ସେଇ ଛକ । ପଶ୍ଚିମ ଆଡୁ ଆସୁଥିଲା ମୁଖ୍ୟମନ୍ତ୍ରୀଙ୍କ କାର୍ । ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ସେତେବେଳେ ମୁଖ୍ୟମନ୍ତ୍ରୀ ଥାନ୍ତି । କାରରେ ଥିଲା କେବଳ ଡ୍ରାଇଭର । ସ୍ୱାଡୁ ଆସୁଛି ନୂଆ ଜିପ୍ ଟା, ଉଭୟ କାର ଓ ଜିପ୍ ର ସଂଘର୍ଷ ହେଲା । ଆଖି ପିଛୁଳାକେ ସେ ଛକରେ ଏତେବଡ ଆକ୍ସିଡେଣ୍ଟଟାଏ ଘଟିଗଲା । ମୁଁ ବୋକାଙ୍କ ପରି ଚାହିଁଥାଏ । କବିଚନ୍ଦ୍ରଙ୍କ

ଅଣ୍ଟାରେ ଓ ପାଦରେ ଆଘାତ ଯୋରରେ ହୋଇଥାଏ । ମାଧବବାବୁ ମଧ୍ୟ ସାଂଘାତିକ ଆହତ ହୋଇଥାନ୍ତି । ଆଶ୍ଚର୍ଯ୍ୟର କଥା ୯ ବର୍ଷର ବାଳିକା ମୀନାକ୍ଷିଙ୍କର କିଛି ହୋଇ ନଥାଏ । ତାଙ୍କ ନାକରେ ସାମାନ୍ୟ ଆହତ ହୋଇ ରକ୍ତ ଟିକିଏ ବୋହୁଥିଲା ମାତ୍ର ।

ମୁଁ ପ୍ରଦର୍ଶନୀ ମଣ୍ଡପକୁ ଯାଇ କର୍ତ୍ତୃପକ୍ଷଙ୍କୁ ଏ ଦୁଃସମ୍ବାଦ ଦେଲି । ଆନୁସଙ୍ଗିକ ବ୍ୟବସ୍ଥା ହେଲା । ସେହି ଦିନଠାରୁ କବିଚନ୍ଦ୍ର କାଳିଚରଣଙ୍କ ଅଣ୍ଟାରେ ଖଞ୍ଜ ଦୋଷ ରହିଗଲା ।

ଆଜି ତାଙ୍କ ଶୁଭ ଜୟନ୍ତୀ ତିଥିରେ ଏକ ଅଶୁଭ ମୁହୂର୍ତ୍ତର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଶୁଣାଇବାର ଅଭିପ୍ରାୟ କଣ ? "କୁମ୍ଭାର ଚକ"ର ଘୂର୍ଣ୍ଣନରେ କେତେ ହାଣ୍ଡି ମାଠିଆ ଗଢ଼ା ହୋଇଛି - ପୋଡ଼ା ହୋଇଛି, ଚକ କିନ୍ତୁ ସେମିତି ଘୂରୁଛି । ନିଷ୍ଠୁର - ନିର୍ବିକାର ଭାବରେ, ସେଇ ସର୍ବ-ନିଅନ୍ତା ଚକ୍ରୀଙ୍କ ହାତରେ, ସେଇ ଚକର ଯେଉଁ ନିର୍ବିକାରତା, ସେ ଦିନ ତରୁଣତର ବୟସରେ ବି ମୋ ଆଖିର ଆଢ଼ୁଆଳରେ ତାହା ଲୁଚି ଯାଇ ନଥିଲା । ଆକସ୍ମିକ ଦୁର୍ଘଟଣାରେ ବି କବିଚନ୍ଦ୍ର ସେଦିନ ଥିଲେ ଅନୁଦ୍‌ବିଗ୍ନ, ଅବିଚଳିତ, ଏଣୁ ସେ ସ୍ଥିତଧୀ ।

ଆଜି କିନ୍ତୁ କୁମ୍ଭାର ଚକ ସର୍ବଭାରତୀୟ ସ୍ତରରେ ଆଦୃତ ହୋଇଛି । ଏ ବର୍ଷ ୧୯୭୭ରେ କେନ୍ଦ୍ର ସାହିତ୍ୟ ଏକାଡେମୀ କବିଚନ୍ଦ୍ର କାଳିଚରଣଙ୍କ ଆତ୍ମଜୀବନୀ ଚରିତ କୁମ୍ଭାର ଚକକୁ ସର୍ବଭାରତୀୟ ସ୍ତରରେ ଯଥାର୍ଥ ଭାବେ ପୁରସ୍କୃତ କରିଛନ୍ତି । ଓଡ଼ିଆରେ ଲେଖା ହୋଇ-ଥିବା ଆତ୍ମଜୀବନୀ ମଧ୍ୟରେ "ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ" ପରେ "କୁମ୍ଭାର ଚକ" ଏକ ମୌଳିକ କୃତି । ଯାହା ପାଠ କଲେ ପାଠକ ମୁଗ୍ଧ ହୁଏ । ଭାଷାର ସରଳ, ସାବଲୀଳ, ସ୍ୱାଭାବିକ ଲଳିତ ଛନ୍ଦ ପ୍ରବାହରେ ଆତ୍ମବିଭୋର ହୁଏ । କୁମ୍ଭାରଚକ ମଧ୍ୟ ଓଡ଼ିଆ ନାଟକ, ସଙ୍ଗୀତ ଓ ସାଂସ୍କୃତିକ ପରମ୍ପରାର ୭୫ ବର୍ଷର ଏକ ଓଡ଼ିଆ ଇତିହାସ ।

ଓଡ଼ିଆ ଭାଷା, ସାହିତ୍ୟ, ନାଟ୍ୟକଳା ଓ ସଙ୍ଗୀତ କ୍ଷେତ୍ରରେ କବିଚନ୍ଦ୍ର କାଳିଚରଣଙ୍କ ଅବଦାନ ଯେ ନିର୍ଦ୍ଦିଷ୍ଟ ଏଥିରେ ଦ୍ୱିଧାର

ଅବକାଶ ନାହିଁ । ଓଡ଼ିଆ ନାଟକ ଜଗତର ଶୈଳୀ ଆଂଶିକ ଓ ଆତ୍ମିକ ପରିବର୍ତ୍ତନର ପ୍ରବର୍ତ୍ତକ ଭାବେ ଓଡ଼ିଆ ଜାତି ତାଙ୍କୁ ଚିରଦିନ ସ୍ମରଣ କରିବ । ଓଡ଼ିଆ ନାଟକରେ ତାଙ୍କ ଦ୍ୱାରା ଠିକ ଓଡ଼ିଶା ଥିଏଟରରେ ପ୍ରଥମେ ସେ ନାରୀ ଭୂମିକାରେ ନାରୀ ଚରିତ୍ର ଅଭିନୟ କରିବାର ଯେଉଁ ପ୍ରୟାସ କଲେ ଆଜି ଓଡ଼ିଶାରେ ସେଇ ପରମ୍ପରା ଗଢ଼ି ଉଠି ଆସି ଏକ ଅଭିନେତ୍ରୀ ଜାତି ସୃଷ୍ଟି ହୋଇଛନ୍ତି । ଓଡ଼ିଶା ଥିଏଟରରୁ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ, 'ବି' ଗ୍ରୁପ୍, ଜନତା, କଳାଶ୍ରୀ, ଶ୍ରୀମା ଓ ଏକାମ୍ର ଥିଏଟର ଆଜି ବ୍ୟବସାୟିକ ରଙ୍ଗମଞ୍ଚ ମାନଙ୍କରେ ଯେଉଁ ଅଭିନେତ୍ରୀମାନେ ଅଭିନୟ କରୁଥିଲେ ଏବଂ ଓଡ଼ିଶାର ବିଭିନ୍ନ ସୌଖିନ ନାଟ୍ୟସଂସ୍ଥା ଅଭିନୟ ମାନଙ୍କରେ ଯେଉଁମାନେ ଅଂଶ ଗ୍ରହଣ କରି ଆଜି ଶହ ଶହ ଦର୍ଶକଙ୍କର ମନୋରଞ୍ଜନ କରୁଛନ୍ତି ସେମାନେ ଏଇ ପରମ୍ପରାର ଦାୟାଦ । ଓଡ଼ିଶାରେ ଅଭିନୟ କଳାକୁ ଜୀବିକାରୂପେ ଗ୍ରହଣ କରିଥିବା ଏଇ କୁଶଳୀ ଶିଳ୍ପୀ ମାନଙ୍କର ଭବିଷ୍ୟତ ବଂଶଧର ମାନଙ୍କ ସମ୍ପର୍କରେ ବିଚାର କରିବାର ବେଳ ଆଜି ଆସିଛି । ସେମାନଙ୍କ ପାଇଁ ରାଜ୍ୟ ସରକାର ଓ ନାଟ୍ୟାମୋଦୀ ଜନସାଧାରଣଙ୍କର ଯେ ନିର୍ଦ୍ଦିଷ୍ଟ କର୍ତ୍ତବ୍ୟ ରହିଛି ତାହା ଭୁଲିଯିବା ଅନୁଚିତ୍ ।

ତେବେ କବିଚନ୍ଦ୍ର କାଳିଚରଣଙ୍କ ପରି ଓଡ଼ିଶାର ଜଣେ କୃତୀ ସନ୍ତାନଙ୍କ ଜୀବଦଶାରେ ତାଙ୍କ ପ୍ରତି ଆମ୍ଭମାନଙ୍କର ଯଥାଯୋଗ୍ୟ ଶ୍ରଦ୍ଧାଞ୍ଜଳି ନିବେଦନର ଯେଉଁ ସୁଯୋଗ ଆସିଛି ସେଥିରେ ଆମେ ଗୌରବାନ୍ୱିତ ମନେ କରୁଛୁ ।

# 'କୁଂଭୀରଂକ ପାଆତଲେ କୋଟି କୁହାର'

ସୀତାକାନ୍ତ ମହାପାତ୍ର

ନିଜକଥା କହିବା କିଛି ସହଜ କଥା ନୁହେଁ । କେତେ ଜଂତର ଭିଡ଼ଓଟରୁ, ସଚେତନ ଓ ଅବଚେତନର ତାଗିଦା ଆସିଯାଏ । କ'ଣ କହିବ, କ'ଣ ନ କହିବ, କ'ଣ ଲୁଚାଇ ରଖିବ, କ'ଣ ଲୋକ-ଲୋଚନକୁ ଆଣିବ । ମନ ଓ ହୃଦୟର ସେଇ ଅଦଭୁତ ଇଲାକାର କଥା ସବୁ । କେହି ତ ଦେଖି ନାହାନ୍ତି, ଜାଣି ନାହାନ୍ତି । ଜଣାଶୁଣା ସିନା ସର୍ବସାଧାରଣ ଘଟଣା । କିନ୍ତୁ ସେ ଅନ୍ଧାର ପ୍ରଦେଶରେ ଯେତେ ଯାହା ଘଟିଯାଏ, ତାର ସାମ୍ନା ସାମ୍ନି କରି ସତ୍ୟକୁ ପ୍ରକାଶ କରିବାର ନୈତିକ ସାହସ ଓ ଦମ୍ଭ ଏତେ ସହଜ ଲଭ୍ୟ ନୁହେଁ । ତେଣୁ କିଏ କ'ଣ ଲେଖେ ନିଜ ବିଷୟରେ । ହୁଏତ ନିଜ ଅଜାଣତରେ ଛଳନା, ଆତ୍ମଂଭରିତା, ସାମାନ୍ୟ ମିଥ୍ୟା— ଏମିତି କେତେ କ'ଣ ପଶି ଆସିପାରେ । ଜୀବନଚର୍ଯ୍ୟା ତ ଶବ୍ଦଚର୍ଯ୍ୟା ନୁହେଁ । ତା ହେଉଛି ନିଜ ଅନ୍ତର ଆତ୍ମାର ମୁହାଁମୁହିଁ ହେବା । ନିଜର ସ୍ୱପ୍ନ-ପୁରୁଷକୁ ସାମ୍ନା କରିବା । ଆଖିରେ ଆଖି ମିଶାଇବା । ସତ୍ୟ ସହିତ ଏହା ଏକ ଏକ୍ସ ପରିମେଣ୍ଟ ।

ପୁଣି କଥାବସ୍ତୁ ଛଡ଼ା କ'ଣ କୁହାଗଲା ତାଛଡ଼ା କହିବାର ସ୍ୱର ବି ଆଉ ଗୋଟିଏ କଥା । କେଉଁଠି ସ୍ୱର ଗୁରୁଗମ୍ଭୀର, ପାଠକକୁ ଦୂରରେ ରଖିଦିଏ । କହେ ଦେଖ୍, ମୁଁ ବଡ଼ ମଣିଷ, ମତେ ସମ୍ମାନ କର, ମୁଣ୍ଡ ନୋଇଁ ଦେ, ଶିଖ୍ ମୋଠୁ । ମୋଠାରେ ଦୁର୍ବଳତା କିଛି ନାହିଁ, ତ୍ରୁଟି ବୋଲି କିଛି ନାହିଁ । ମୋ ଜୀବନ ହୁଏତ ଆତ୍ମୋତ୍ସର୍ଗ ବା ସାଧନାର ଏକ ନିରନ୍ତର କାବ୍ୟ । କାଳୁଛି ପାଠକ ମୁଗ୍ଧ ଚକିତ ହୋଇ ରହେ । କିନ୍ତୁ ଆଉ ବେଳେବେଳେ । ତ ଅନ୍ତୀପ୍ସ ସେ ସ୍ୱର ସେ କହିବା ଭଙ୍ଗୀ । ଲାଗେ-

ବୁଢୀ ମାଠୁ ଗପ ଶୁଣୁଛୁ— ଅନେକ ନଭେଲରବା କଥା ଶୁଣୁଛୁ । କଥାର ଲହରରେ ମନ ମଜ୍ଜିଯାଏ, ବୁଡ଼ିଯାଏ । ଜୀବନ ଚରିତ ଓ ପାଠକ ଏକୀଭୂତ ହୋଇଯାନ୍ତି ।

କୁମ୍ଭାରଚକ ମୋ ଦୃଷ୍ଟିରେ ସେମିତି ଗୋଟିଏ ଅଖିଳା ଖୋଲା-ମେଲା ସ୍ୱପ୍ନ - ଭିତରର ମଣିଷର ନିଜକଥା । ଆଜି ତାର ଏକାନ୍ତ ଆତ୍ମୀୟ ସ୍ୱର ଅତି ଆପଣାର, ଅତି ପରିଚିତ । ସେ ସ୍ୱର ମାଟିର ସ୍ୱର । ଆମ ଗାଁର ସ୍ୱର; ପରିଚିତ ଐତିହ୍ୟର ସ୍ୱର, ଗୋଟିଏ ଅନ୍ତରଙ୍ଗ କଳା ରସିକ, ଜୀବନ ପ୍ରେମୀର ସ୍ୱର । ସେଥି ଭିତରୁ ଦେଖି କେତେ କ'ଣ ଆଖି ଆଗକୁ ଭାସି ଆସେ । ଗାଁ, ଗାଁର ନଈ, ଶ୍ରେଷ୍ଠ ବଡ ମଣିଷ, ତାଙ୍କମାନଙ୍କର ସୁଖ ଦୁଃଖ, ଆଜି ଯେମିତିଆ ଏକାତ୍ମ ଏକ ପରିବେଶର ଭିତରେ ଭାବପ୍ରବଣ ଅନୁଭବୀ, ତରୁଣୀ ଗୋଟିଏ ମଣିଷର ଜୀବନର ଗତିପଥ । ଭାଷାରେ ଗାଁ ଝଲସି ଉଠେ । ନଈ କଳକଳ ହୋଇ ବହିଯାଏ । ଚଢେଇଙ୍କ ଗୀତ ଶୁଭେ । ପବନରୁ ସ୍ୱର ବାରିହୁଏ । "ଘରେ ରହିଲେ ବୋଉର ସେ ହସ ପରଶେ ମୁହଁ ଘରୁ ବାହାରିକୁ ଗଲେ ସ୍ମୃତିର ଆକ୍ରମଣ । ଏକୁଟିଆ ପଡ଼ିଗଲେ ବ୍ୟସ୍ତ ବିରକ୍ତ ଲାଗିଲେ ଜଟେଶ୍ୱରଙ୍କ ମହାନଦୀ ବନ୍ଧକୁ ଯାଏଁ, ଟିକିଏ ମନ ବଦଳେଇବାକୁ ସେଠି ହେଲେ କଅଣ ରକ୍ଷା ଅଛି ? ସେ ବୁଢା ଓସ୍ତଗଛଟା ଏବେ ବି ବଞ୍ଚି ରହି କୋଉ ହଜିଲା ଦିନ କଥା ମୋ କାନେ କାନେ ଶୁଣାଏ ।"

ପୁଣି, ତାଙ୍କର ଭାଷାରେ ;

"ଝରଦିନ, ଦିନେ ଭୁବନେଶ୍ୱରରୁ ଟ୍ୟାକ୍ସିରେ ଏକୁଟିଆ କଟକ ଫେରୁଥାଏ । ପଶ୍ଚିମ ମେଘ କାନ୍ଥି ତଳେ ସୂର୍ଯ୍ୟ ବୁଡ଼ି ଯାଇଥାଏ, ଏଣେ ପୂର୍ବମେଘ କୋଣରେ ଜହ୍ନ ଉଇଁ ଆସୁଥାଏ । ସେଦିନ ପୁନେଇଁ । ଫୁଲନଖରା ଛକ ପାଖ । ସେଠି ଗୋଟିଏ ପାଣି ଡୋବା ଅଛି । ତାର କୂଳରେ କେତୋଟି ଆମ୍ବଗଛ । ମନେହୁଏ ଯେମିତି ଭାଇବନ୍ଧୁ ସାଥିରେ ନେଇ ରହିଛନ୍ତି । ଅଳ୍ପ ଦୂରରେ ଗୋଟିଏ ଏକୁଟିଆ ତାଳଗଛ ଛିଡ଼ା ହୋଇଛି । ପାଖରେ ପଡେ ଯେମିତି କେହି ବନ୍ଧୁ କୁଟୁମ୍ବ ନାହାନ୍ତି ତାର । ଭାବିଲି ମୁଁ ତ ଏଇମିତି ଏକୁଟିଆ । ଏଇ ଜହ୍ନ ଆଲୁଅରେ, ଏଇ ଏକୁଟିଆ ତାଳଗଛ ମୂଳେ ନଟୁଟିଆରେ ଚେତୁଆ ଚିନ୍ତା ବସି ଏକତାବୁଟିଏ ଧରି

ଗୀତ ଗାଇ କୁମ୍ଭାରକୁ ମନକଥା ଶୁଣାଇଲେ ଘର ଭଲ ହୁଅନ୍ତା । କିନ୍ତୁ କଅଣ ଗାଇବ ? ଅଧା ଆଲୁଅ ଅଧା ଅନ୍ଧାରରେ ପକେଟ ଅଣ୍ଡାଳି ଖଣ୍ଡେ କାଗଜରେ ଗୀତଟିଏ ଟିପିଲି । ବାକି ଯେତିକ ରହିଗଲା ଘରେ ପହଞ୍ଚି ସାଙ୍ଗେ ସାଙ୍ଗେ ପୂରଣ କରି ଗୁଣୁଗୁଣୁ କରି ଗାଇଲି ।

"ମନରେ, କାଳି ହେବ ଖାଲି ତୋ ପଞ୍ଜୁରୀ
ଯେଉଁ ବାଟ ମୁହଁଇଲେବି ଯିବ ସେ ବାହାରି ।"

ଏଇ ଯୋଡ଼ିଏ ଉଦ୍ଧୃତିରୁ କୁମ୍ଭାର ଚକର କଥା ଓ ଭାଷା ସମ୍ପର୍କରେ ସମ୍ୟକ୍ ଧାରଣା କରିହେବ । ଲେଖକ ସଙ୍ଗୀତଜ୍ଞ, ନାଟ୍ୟକାର, ସଙ୍ଗୀତର ଛନ୍ଦ, ରାଗିଣୀ ତାଙ୍କର ପ୍ରତି ବାକ୍ୟରେ, ପ୍ରତି ପୃଷ୍ଠାରେ । ସଙ୍ଗୀତର କରୁଣା, ଛନ୍ଦୋମୟ ଭାବବେଦନ ମମତା ଓ ପ୍ରାଣସ୍ପର୍ଶୀ ଆକୁଳତା ଓ ସହାନୁଭୂତି ସେଥିରେ ଅଦ୍ଭୁତ ଭାବରେ ଅନୁରଣିତ ହୁଏ । ପୁଣି ମନେପଡ଼େ ସ୍କୁଲ ଛାତ୍ର ଥିଲାବେଳେ ମୁଁ ଦେଖିଥିବା 'ଭାତ' ନାଟକର ନାଟ୍ୟରୂପ ଆମ ଗାଁରେ, ଭ୍ରାମ୍ୟମାଣ ଯାତ୍ରାଦଳ ଦ୍ୱାରା ।

"ମରଣର ଚିତା ମନ୍ଥନ କରି ଅକାଳ ମଡ଼ାଏ ଉଠରେ ଚେଇଁ
ହାଡ଼ ଚମ ଘେନି କଙ୍କାଳ ଆସ ମରି କି ଡରୁଛ ଜଳିବା ପାଇଁ ।"

ମନେଅଛି ସେ ଗୀତର ଉଦ୍ଦାମ ଛନ୍ଦରେ ରୋମ ଟାଙ୍କୁରି ଉଠିଥିଲା ।

ଇଏତ ଦୃଷ୍ଟିଭଙ୍ଗୀ କଥା । କଥାବସ୍ତୁକୁ ଅନେଇଲେ କେତେ ଯେ ଅଜଣା ଘଟଣାବଳୀ କୁମ୍ଭାରଚକ ଭିତରେ ଆମ ଆଖି ଆଗକୁ ଆସେ । ଜଣେ କବିର ଦୃଷ୍ଟି ଭିତର ଦେଇ । ଆଜି ସେଇ ସବୁ ମଣିଷ ଘଟଣା ସମ୍ଭବ ଜଳଛବି ପରି ପୁଣି ଥରେ ଜୀବନ୍ତ ହୋଇ ଉଠନ୍ତି । ସବୁ କଳାକାରର ମନକଥା ଲେଖକ ଗୋଟିଏ ଧାଡ଼ିରେ କହିଛନ୍ତି 'କ୍ଷମାଭିକ୍ଷା' ସେ "କୁଂଭାରିଂଙ୍କ ପାଆଡ଼େ କୋଡ଼ି ଜୁହାର" । ତାଠୁଁ ଅଧିକ କୋଉ କଳାକାର ବା କଣ କରିପାରେ ?

# ଓଡ଼ିଆ ସଂସ୍କୃତିର ଅନ୍ୟତମ ରକ୍ଷକ

### ବସନ୍ତ କୁମାର ପାଣିଗ୍ରାହୀ

ମୋର ପିଲାଦିନର କଥା । ମୋ ଗାଁ ମଞ୍ଜୁଷାରେ ରଜା ଥାଆନ୍ତି ସ୍ୱର୍ଗତ ଜଗନ୍ନାଥ ରାଜମଣି । ସେ ଜଣେ ସଙ୍ଗୀତ ଓ ନାଟକ ପ୍ରିୟ ରାଜା । ଗାଁରେ ନାଟକ ହୁଏ । ବାହାରୁ ନାଟକ ଦଳ ଯାଇ ନାଟକ ପରିବେଷଣ କରନ୍ତି । ସେହି ଦଳ ଥିଲା କାଳୀ ବାବୁଙ୍କ ଓଡ଼ିଶା ଥିଏଟର୍ସ । ସେତେବେଳେ କାଳିବାବୁଙ୍କ ନାଆଁ ନୂଆ କରି ଆମେ ଶୁଣିବାକୁ ପାଉଥାଉ । ନାଟକ ଦେଖିବା ପାଇଁ କି ଭିଡ଼ । ରଜାଙ୍କ ଉଆସରେ ନାଟକ ଦେଖିବା ପାଇଁ ସନ୍ଧ୍ୟାରୁ ସିଂହଦ୍ୱାର ଠାରେ ଦଳା ଦଳି । ପିଲାବେଳର ଉତ୍ସାହ-ଗନ୍ତେ ଖାଇଦେଇ ଶୀତ ରାତିରେ ମାଠ ଘୋଡ଼େଇ ସାଙ୍ଗ ସାଥି ମେଳରେ ଦୁଇ ଘଣ୍ଟା ଭିଡ଼ରେ ଠିଆ ହେଲା ପରେ ସିଂହଦ୍ୱାର ଖୋଲାହୁଏ । ଦୌଡ଼ି ଦୌଡ଼ି ଭିତରକୁ ଯାଇ ରଙ୍ଗମଞ୍ଚ ପାଖକୁ ଲାଗି ଆଗ ଧାଡ଼ିରେ ଚଳେ ବସିଗଲେ ଗୋଟିଏ ଗଡ଼ ଜିଣିଲା ଭଳି ଲାଗେ । ଆମ ଗଞ୍ଜାମ କଳା-ପରିଷଦର କବିସୂର୍ଯ୍ୟ ରଙ୍ଗମଞ୍ଚରେ କୌଣସି ସାଂସ୍କୃତିକ କାର୍ଯ୍ୟକ୍ରମ ହେଲେ ଯେତେବେଳେ ପିଲାମାନେ ଆଗକୁ ମାଡ଼ି ଆସନ୍ତି ସେତେବେଳେ ଯଦିଓ ବିରକ୍ତି ଲାଗେ ମୋ ପିଲା ଦିନର କଥା ମନେ ପଡ଼ିଗଲେ ମୁଁ ଦବିଯାଏ ଆଉ ପିଲାମାନଙ୍କୁ ପଛକୁ ଟଳାଯିବା ପାଇଁ କହି ପାରେନି । ସେତେବେଳର କାଳୀବାବୁଙ୍କ ରୂପ ଯଦିଓ ସ୍ପଷ୍ଟ ମନେ ପଡ଼ୁନି ତାଙ୍କ ନାଟକ ଗୁଡ଼ିକର କିଛି ଅଂଶ ମନେ ରହି ଯାଇଛି । କେବଳ ମଞ୍ଜୁଷା ନୁହେଁ ଉପାନ୍ତର ସବୁ ଅଞ୍ଚଳ ଗୁଡ଼ିକରେ ତାଙ୍କ ଦଳ ନେଇ କାଳୀବାବୁ ବୁଲୁଥିଲେ । ଓଡ଼ିଆ ନାଟକ ପରିବେଷଣ କରୁଥିଲେ । ଓଡ଼ିଆମାନଙ୍କ ଭିତରେ ଉତ୍ସାହ ଆସୁଥିଲା । ତାଙ୍କର ଗୀତ ଗୁଡ଼ିକ ବୋଲା ହେଉଥିଲା । ଏଭଳି ମଞ୍ଜୁଷା, ତରଳା, ସୁରଙ୍ଗି, ହୁଡ଼ାରସିଙ୍ଗି, ଟିକାଲି ପ୍ରଭୃତି ଓଡ଼ିଆ ବହୁଳ ଅଞ୍ଚଳ ଗୁଡ଼ିକରେ କାଳୀବାବୁଙ୍କ ନାଟକ ଓ ତାଙ୍କ ନାଆଁ ସମସ୍ତଙ୍କ ମନରେ ଜାତୀୟ ଭାବନାର ପ୍ରେରଣା ଆଣି ଦେଉଥିଲା ।

ତା ପରେ ବ୍ରହ୍ମପୁର କଲେଜରେ ପଢିଲା ବେଳେ କାଳୀବାବୁଙ୍କ ବହୁ ନାଟକ ଯଥା : ଭାଇ, ଗାର୍ଲସ୍କୁଲ, ରକ୍ତମାଟି, ଅଭିଯାନ ପ୍ରଭୃତି ନାଟକ ଅଭିନୟ କରିଛି ଓ ନିର୍ଦ୍ଦେଶନା ଦେଇଛି । କି ମର୍ମସ୍ପର୍ଶି କେତେକ କଥା ଓ କି ସରଳ ସେ ଭାଷା — ବହୁତ ଶିକ୍ଷା ଦେଇଛି ମୋତେ ସେହି ନାଟକ ଗୁଡ଼ିକ । ରକ୍ତମାଟିର ସେଇ କେତେକ ପଦ "ବଳଦ ଗାଡ଼ିରେ ଘୋଡ଼ା-ଯୋଚିଲେ ହୁଏନି" ଇତ୍ୟାଦି ବହୁ ଲୋକଙ୍କୁ ବହୁ ଶିକ୍ଷା ଦେଇଛି ।

ତା ପରେ କାଳୀବାବୁଙ୍କ ସହ ଗତ ପନ୍ଦର ବର୍ଷହେଲା ସଙ୍ଗୀତ ନାଟକ ଏକାଡେମୀରେ ଦେଖା । ସେହି ସଂସ୍ଥାର ସଭ୍ୟ ଭାବରେ ଦୁହେଁ ବହୁବାର ମିଳିତ ହୋଇଛୁ - ଆଲୋଚନା କରିଛୁ - ତାଙ୍କର ଜ୍ଞାନ ଆଗରେ ମୁଁ ବା କେତେ ।

ଯେଉଁ ସମୟରେ ଓଡ଼ିଆ ଭାଷା ରହି ପାରିବ କି ନାହିଁ - ଓଡ଼ିଆ ସଂସ୍କୃତିକୁ କିଭଳି ଭାବରେ ଦକ୍ଷିଣ ବିଚ୍ଛିନାଞ୍ଚଳରେ ବଞ୍ଚାଇବାକୁ ହେବ ଚିନ୍ତା କରି ପାରୁଥିଲା ସେତେବେଳେ କାଳୀବାବୁଙ୍କ ଓଡ଼ିଆ ଥିଏଟର୍‌ର ଦେଶ ଓ ଜାତି ପାଇଁ ଅବଦାନ ଯେ କେତେ ବେଶୀ ତାହା ଏବେ ଚିନ୍ତା କଲେ କାଳୀବାବୁ ଓ ତାଙ୍କର କଳାକାର ଦଳଙ୍କ ଠାରେ ଆମର କୃତଜ୍ଞତା ଅଜାଡ଼ି ହୋଇଯାଏ ।

ସାହିତ୍ୟର କେତେକ ଦିଗରେ କାଳୀବାବୁଙ୍କ ଲେଖା ଶ୍ରେଷ୍ଠ ଓ ବଳିଷ୍ଠ । ଗୀତ ଗୁଡ଼ିକରେ ସେ ଯେଉଁ ସରଳତା ଭରି ଦିଅନ୍ତି ଶୁଣିବା ଲୋକର ମନକୁ ତାହା ନଛୁଇଁ ରହି ପାରେନା । ତାଙ୍କ ଭଳି ଗୀତ ଲେଖିବାକୁ ଚେଷ୍ଟା କଲେ ବି ହୁଏନା ।

ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିକୁ ତାଙ୍କର ଦାନ ଚିର ସ୍ମରଣୀୟ । ବିଶେଷ କରି ତାଙ୍କ ଲେଖାରେ ଯେଉଁ ମୌଳିକତା ଫୁଟେ ଅନ୍ୟ ଲେଖାରେ ତାହା କ୍ୱଚିତ୍ ମିଳେ । ଓଡ଼ିଶୀ ନୃତ୍ୟର ସ୍ୱତନ୍ତ୍ର ସତ୍ତାକୁ ଯେଉଁଭଳି ଭାବରେ ସେ ପ୍ରମାଣିତ କରି ପାରିଲେ ସେଥିପାଇଁ ଜାତିର ସାଂସ୍କୃତିକ ଜୀବନରେ ସେ ଅମର ରହିବେ ।

ଜାତିର ସେବା କରିବା ପାଇଁ ଜଗନ୍ନାଥ ତାଙ୍କ ହାତ ଗୋଡ଼ ବହୁ ବର୍ଷ ଚଳେଇ ରଖନ୍ତୁ ।

# ସେ ଏକ ଜାତୀୟ ଅନୁଷ୍ଠାନ

**ରାମଚନ୍ଦ୍ର ମିଶ୍ର**

"କୁମ୍ଭାରଚକ"—ଜାତୀୟ ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କାର ପାଇଁ ଉଦ୍‌ଘୋଷିତ ହୋଇଛି । କୁମ୍ଭାରଚକ ଘୂରୁଛି । ମାଟି ପିଣ୍ଡୁଳାରୁ କେତେ ଜଣ ତିଆରି ନ ହେଉଛି ? ସେହି ଚକର ଘୂର୍ଣ୍ଣନରେ ବହୁ ଘାତ ପ୍ରତିଘାତ ମଧ୍ୟରେ ଏଇ ମଣିଷଟି ଉତ୍କଳ ସରସ୍ୱତୀଙ୍କ ସମ୍ମୁଖରେ ଥିବା ପୂର୍ଣ୍ଣକୁମ୍ଭର ନିରଳସ ଭାବରେ ଯେଉଁ ସାଧନା — ଓଡ଼ିଆ ଜାତିର ସଂଗୀତ, ନୃତ୍ୟ କଳାକୁ ବିଶ୍ୱ ଦରବାରରେ ପରିଚୟ କରାଇବାର ଯେଉଁ ଦୃଢ଼ତା, ତାହା ତାଙ୍କୁ ଓଡ଼ିଶାର ଅନ୍ୟାନ୍ୟ ବରେଣ୍ୟ କୃତି ସନ୍ତାନମାନଙ୍କ ମଧ୍ୟରୁ ଅନ୍ୟତମ ରୂପେ ପ୍ରତିଷ୍ଠିତ କରାଇ ପାରିଛି । ପଦ ମର୍ଯ୍ୟାଦା କିମ୍ବା ସମ୍ମାନର ଆଗ୍ରହୀ ନହେଲେ ମଧ୍ୟ ସମ୍ମାନ ତାଙ୍କ ପଛରେ ଗୋଡ଼ାଇ ଚାଲିଛି ।

କବିଚନ୍ଦ୍ର ଭାବରେ ସେ ତାଙ୍କର ସଙ୍ଗୀତରେ ଯେଉଁ ଭାବ ସରସତା ଓ ସରଳତା ଭରି ଦେଇଛନ୍ତି, ତାହା ପଲ୍ଲୀର ସରଳ ନିରକ୍ଷର ଲୋକଙ୍କଠାରୁ ପୁଣି ପଣ୍ଡିତ ଜନ ପର୍ଯ୍ୟନ୍ତ ସର୍ବ ସ୍ତରରେ ସମାଦୃତ ହୋଇ ପାରିଛି ଏବଂ ସଙ୍ଗୀତ ରଚନାରେ ଏକ ନୂତନ ଯୁଗର ପ୍ରବର୍ତ୍ତନ କହିଲେ ଅତ୍ୟୁକ୍ତି ହେବ ନାହିଁ । କବି ଜୟଦେବଙ୍କ ରଚନାବଳୀକୁ ଓଡ଼ିଆ ଭାଷାରେ କବିଙ୍କର ମୂଳ ରଚନା କ୍ଷୁର୍ଣ୍ଣ ନ କରି ଯେଉଁ ଅନୁବାଦ କଲେ ତାହା ତାଙ୍କର ସଙ୍ଗୀତ କଳାର ପାରଦର୍ଶୀତାର ପରିଚୟ ଦିଏ ।

ନାଟ୍ୟାଚାର୍ଯ୍ୟ ଭାବରେ ୧୯୪୦ ମସିହାରୁ ଆଧୁନିକ ଓଡ଼ିଆ ନାଟକର ମୋଡ଼ ପରିବର୍ତ୍ତନ କରି ଯେଉଁ ନୂତନ ଯୁଗର ପ୍ରବର୍ତ୍ତନ କଲେ

ତାହା କାଳୀବାବୁଙ୍କ ଯୁଗ ନାମରେ କେବଳ କେବଳ ସମାଲୋଚକ ନାମିତ କରିଥାନ୍ତି । ନାଟକରେ ସାମାଜିକତା ପାଶ୍ଚମୁଖୀ ଭାଷା ଓ ସର୍ବୋପରି ସମାଜର ପ୍ରତ୍ୟେକ ସ୍ତରରେ ଲୋକଙ୍କୁ ସୁହାଇଲା ପରି ନାଟକ ରଚନା କରି ତତ୍କାଳୀନ ସମାଜରେ ଯେଉଁ ଆନ୍ଦୋଳନ ସୃଷ୍ଟି କରିଥିଲେ ତାହା ଅଦ୍ୟାବଧି ମଧ୍ୟ ଦର୍ଶକର ଅପାସୋରା ରହିଛି ।

ସର୍ବୋପରି ଓଡ଼ିଶୀ ନୃତ୍ୟକୁ ବିଶ୍ୱଦରବାରରେ ପରିଚୟ କରିବାରେ ତାଙ୍କର ଯେଉଁ ସାଧନା ତାହା ଓଡ଼ିଆ ଜାତି ଭୁଲିବାର ନୁହେଁ । ଅବଶ୍ୟ ସେ 'ଜୟଦେବ' ନାଟକ ଲେଖି ଓଡ଼ିଆ ପୁଅ ଜୟଦେବ ବୋଲି ପ୍ରତିପାଦନ କଲାପରେ କେତେକ ଆଲୋଚକ ଓ ସମାଲୋଚକଙ୍କର ଦୃଷ୍ଟି ସେ ଦିଗକୁ ଫେରିଲା ଓ ପରବର୍ତ୍ତୀ କାଳରେ ତାର ତଥ୍ୟ ଉଦ୍‌ଘାଟନ କରିବାରେ ପ୍ରୟାସୀ ହୋଇଛନ୍ତି । ଓଡ଼ିଶୀ ସଙ୍ଗୀତ ଓ ନୃତ୍ୟର ବୈଜ୍ଞାନିକ ପଦ୍ଧତି ମୌଳିକତା ଓ ସର୍ବୋପରି ତାର ଉତ୍କୃଷ୍ଟତା ପ୍ରତିପାଦନରେ ତାଙ୍କର ସାଧନା ଏବେ ମଧ୍ୟ ଶିଥିଳ ନୁହେଁ ।

ତେଣୁ ଏ ବୟସରେ ଜରା ଓ ରୋଗ ତାଙ୍କୁ ଆକ୍ରମଣ କଲେ ମଧ୍ୟ ସେଥିପ୍ରତି ଭ୍ରୂକ୍ଷେପ ନକରି ତାଙ୍କର ସାଧନା ଅବ୍ୟାହତ ରହିଛି, ସେ କବିଚନ୍ଦ୍ର ଉତ୍କଳର କାର୍ଲୀଚରଣ ହୋଇଛନ୍ତି । ସେ ଉତ୍କଳୀୟ ସଙ୍ଗୀତ ନୃତ୍ୟ କଳାର ଏକ ଜୀବନ୍ତ ଜାତୀୟ ଅନୁଷ୍ଠାନରେ ପରିଣତ ହୋଇ ପାରିଛନ୍ତି ।

# କାଳିବାବୁ

## ଡକ୍ଟର ହରେକୃଷ୍ଣ ମହତାବ

ସହପାଠୀ ହିସାବରେ, ଜଣେ ଅନ୍ତରଙ୍ଗ ବନ୍ଧୁ ହିସାବରେ, ସର୍ବୋପରି ଜଣେ ଓଡ଼ିଶାବାସୀ ହିସାବରେ କାଳିବାବୁଙ୍କ କୃତିତ୍ୱ ପାଇଁ ମୁଁ ଗର୍ବ ଅନୁଭବ କରୁଛି । ଏ ଯୁଗରେ ସେ ଜଣେ ଶ୍ରେଷ୍ଠ ଐତିହାସିକ ବ୍ୟକ୍ତି । ଓଡ଼ିଶୀ ନୃତ୍ୟ, ସଂଗୀତ କିଏ କେବେ ସର୍ଜନା କରିଥିଲେ ଜଣାନାହିଁ । କିନ୍ତୁ ଆଜି ସେ ଏହାର ପ୍ରଧାନ ପ୍ରବର୍ତ୍ତକ, ଏହା ଭବିଷ୍ୟତ ଇତିହାସ ସ୍ୱୀକାର କରିବ । ରାଜନୀତି କ୍ଷେତ୍ରରେ ବହୁ ବ୍ୟକ୍ତି ଉଚ୍ଚସ୍ଥାନ ପାଇଥିଲେ ମଧ୍ୟ ଇତିହାସ ସମସ୍ତଙ୍କୁ ମନେରଖେ ନାହିଁ । କିନ୍ତୁ କଳା, ସାହିତ୍ୟ କ୍ଷେତ୍ରରେ କାଳିବାବୁ ଯେଉଁ ସ୍ଥାନ ଗ୍ରହଣ କରି ପାରିଛନ୍ତି, ତାହା ଚିର ସ୍ମରଣୀୟ ହୋଇ ରହିବ । ବାଙ୍କୀର କ୍ଷୁଦ୍ର ପରିସର ମଧ୍ୟରେ ଆରମ୍ଭ କରିଥିବା ଜଣେ ଗୀତିନାଟ୍ୟ ସୋସାଇଟିର ସଂଗଠକ ଆଜି ଯେ ଏତେ ଉଚ୍ଚ ସ୍ଥାନ ଲାଭ କରିବେ, ଏହାର ସୂଚନା ମୂଳରୁ ମିଳୁଥିଲା ।

କଲେଜ ପାଠ ସରିଲାପରେ, ଆମ୍ଭେମାନେ ରାଜନୀତିରେ ମାତିଲୁ । ବାଲେଶ୍ୱରରେ ମୁଁ ଜିଲ୍ଲାବୋର୍ଡ଼ ଚେୟାରମ୍ୟାନ ଥିବା ସମୟରେ, କାଳିବାବୁଙ୍କ ଅପେରା ସେଠିକୁ ଯାଇଥିଲା ଏବଂ ସେଠି ଯେଉଁ ଜନପ୍ରିୟତା ଏହା ଲାଭ କରିଥିଲା, ତାହା ଆଜି ଚଉବନ ବର୍ଷ ପରେ ମଧ୍ୟ ମୋର ମନେ ଅଛି । ସେହିଦିନରୁ ସେ ସଙ୍ଗୀତ ଜଗତରେ ଜଣେ ଶ୍ରେଷ୍ଠ ବ୍ୟକ୍ତି ବୋଲି ପରିଚିତ ହେଲେଣି । 'କବିଚନ୍ଦ୍ର' ଉପାଧି ତାଙ୍କ ପକ୍ଷରେ ଆଜି ବଡ଼ ନୁହେଁ କହିଲେ ଚଳେ; କାରଣ ସେ ଯେ ଓଡ଼ିଶୀ ନୃତ୍ୟ ଓ ସଙ୍ଗୀତକୁ କେବଳ ଭାରତ ନୁହେଁ, ସମସ୍ତ ପୃଥିବୀରେ ପରିଚିତ କରାଇ ସେମାନଙ୍କ

ପାଇଁ ସମ୍ମାନର ସ୍ଥାନ ଅଧିକାର କରିଇ ପାରିଲେ, ଏହା ବାସ୍ତବିକ ଏକ ଅଦ୍ଭୁତପୂର୍ବ କୃତିତ୍ୱ । ସେ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ଡକ୍ଟର ଉପାଧି ଲାଭ କରିଛନ୍ତି । ଏହା ମଧ୍ୟ ତାଙ୍କର ଐତିହାସିକ ଜୀବନରେ ବଡ଼ କଥା ନୁହେଁ । ସେ ଯେ ଭାରତ ସରକାରଙ୍କ ପ୍ରଦତ୍ତ "ପ୍ରଦ୍ମଶ୍ରୀ" ଉପାଧି ପ୍ରତ୍ୟାଖ୍ୟାନ କରିଛନ୍ତି ଏଥିରେ, ସେ ତାଙ୍କର ମହତ୍ତ୍ୱ ପ୍ରତିପାଦନ କରିଛନ୍ତି ।

ସଂଗୀତରେ ସେ ଧୁରନ୍ଧର, ଏହା ସମସ୍ତେ ଜାଣନ୍ତି । କିନ୍ତୁ ସେ ଯେ ଜଣେ ସାହିତ୍ୟ କ୍ଷେତ୍ରରେ ପ୍ରଧାନ ବ୍ୟକ୍ତି ଏହା ତାଙ୍କର ସାହିତ୍ୟ ଏକାଡେମୀର ଉପାପୂନ ପାଇବାର ବହୁ ପୂର୍ବରୁ ମୁଁ ଜାଣିଥିଲି । ଏବଂ ବହୁ ସଭାସମିତିରେ ମୁଁ ତାହା ପ୍ରକାଶ କରିଥିଲି । ତାଙ୍କ ରଚିତ ସଙ୍ଗୀତର ସାହିତ୍ୟ ଉଚ୍ଚ କୋଟୀର । ତାଙ୍କର ଭାଷା ଓ ଛନ୍ଦ ଯୋଜନା ଅନ୍ୟ ସଙ୍ଗୀତ ରଚକମାନଙ୍କଠାରେ ପ୍ରାୟ ଦେଖା ଯାଏ ନାହିଁ । ତାଙ୍କର ରଚନା ଖାଣ୍ଟି ଓଡ଼ିଆ ଭାଷାରେ । ଓଡ଼ିଆ ଭାଷାରେ ସୁଲଳିତ ରଚନା ଯେ ହୋଇପାରେ, ଏହା ସେ ସ୍ୱ ରଚିତ ସଙ୍ଗୀତମାନଙ୍କରେ ପ୍ରମାଣ କରିଛନ୍ତି । ତାଙ୍କ ସମ୍ବନ୍ଧରେ ଲେଖିବାକୁ ହେଲେ ବହୁତ କିଛି ଲେଖିବାକୁ ହେବ । ତାଙ୍କର "କୁମ୍ଭାରଚକ" ପାଠ୍ୟ ପୁସ୍ତକ ହେବା ଉଚିତ୍ । ଜୀବନରେ କିପରି କୃତିତ୍ୱ ଅର୍ଜନ କରିବାକୁ ହୁଏ, ସେହି ପୁସ୍ତକରୁ ଯୁବକ ଯୁବତୀମାନେ କିଛି ଶିକ୍ଷା କରି ପାରିବେ । ସେ ସହସା ବିଖ୍ୟାତ ବ୍ୟକ୍ତି ହୋଇ ନାହାଁନ୍ତି । ବହୁ ଖାଲ ଢିପ ଅତିକ୍ରମ କରି, ବହୁ ସାଧନା ନିଜ ଅଙ୍ଗେ ନିଭେଇ ସେ ଆଜି ଚିର ସ୍ମରଣୀୟ ହୋଇଛନ୍ତି । ଈଶ୍ୱର ତାଙ୍କୁ ଆହୁରି ବହୁ ବର୍ଷର ଆୟୁ ପ୍ରଦାନ କରନ୍ତୁ । କବିଚନ୍ଦ୍ରଙ୍କ ଆଲୋକ ଓଡ଼ିଶାବାସୀ ବହୁବର୍ଷ ଉପଭୋଗ କରନ୍ତୁ ଏହା ମୋର ଅନ୍ତରର ପ୍ରାର୍ଥନା ।

# କବିଚନ୍ଦ୍ର କାଳୀଚରଣ

**ଉଦୟନାଥ ଷଡ଼ଙ୍ଗୀ**

କବିଚନ୍ଦ୍ର କାଳୀଚରଣଙ୍କ ଗୋଟିଏ ଜୟନ୍ତୀ ଉତ୍ସବରେ ତାଙ୍କର ଗୁଣମୁଗ୍ଧ, ଏକାନ୍ତ ଅନୁଗତ ଉଦ୍ୟୋକ୍ତାମାନେ ପ୍ରସ୍ତାବ ବାଢ଼ିଥିଲେ ଯେ, 'କବି-ସୂର୍ଯ୍ୟ' ଉପାଧିହିଁ କାଳୀଚରଣଙ୍କ ପ୍ରତି ଯଥାଯୋଗ୍ୟ ସମ୍ମାନ । ଚନ୍ଦ୍ରର ନିଜତ୍ୱ କିଛି ନାହିଁ, ସେ ସୂର୍ଯ୍ୟର ଆଲୋକରେ ଆଲୋକିତ । କବିଚନ୍ଦ୍ର ଉପାଧି ଯେଉଁ ସମୟରେ ଯେ କେହି ଦେଇଥାଆନ୍ତୁ ନା କାହିଁକି, ତାଙ୍କପ୍ରତି ତାହା ସେପରି ସମ୍ମାନପ୍ରଦ ନୁହେଁ । ଏ ଅନୁଷ୍ଠାନ ତାଙ୍କୁ ଆଜିଠାରୁ କବି-ସୂର୍ଯ୍ୟ ପଦବୀରେ ମଣ୍ଡିତ କରୁଛି ।

ଏହି ପ୍ରସ୍ତାବର ସମର୍ଥନରେ କୁହା ଯାଇଥିଲା, "କବି ସୂର୍ଯ୍ୟ ଉପାଧି ଅବଶ୍ୟ ଆମ ରାଜ୍ୟରେ ଆଗରୁ ବେଶ୍ ଜଣାଶୁଣା । ଚମତ୍କାର ଏହି ଉପାଧିରେ ଖ୍ୟାତି ଅର୍ଜ୍ଜନ କରିଛନ୍ତି । ତଥାପି ଏକ ଉପାଧିରେ ଏକାଧିକ ଯୋଗ୍ୟ ବ୍ୟକ୍ତିଙ୍କୁ ଭୂଷିତ କରିବାରେ ବାଧା କେଉଁଠି ନାହିଁ । ବରଂ ନିଜ ପ୍ରତିଭାରେ ଦେଦୀପ୍ୟମାନ କାଳୀଚରଣଙ୍କ ପ୍ରତି ବଳଦେବ ରଥଙ୍କ ଭଳି ଏ ଉପାଧି ଅଧିକ ଉପଯୁକ୍ତ ହେବ ।"

ପ୍ରସ୍ତାବର ପ୍ରତିବାଦ ନ କଲେ ମଧ୍ୟ ଉତ୍ସବର ସଭାପତି ନିଜ ମତ-ପ୍ରକାଶ କରିଥିଲେ—ସୂର୍ଯ୍ୟ ପ୍ରଖର, ପ୍ରଚଣ୍ଡ । ସେ ସୃଷ୍ଟି ପାଳନ କର୍ତ୍ତା ହେଲେ ମଧ୍ୟ ତାର ପ୍ରକୋପରେ ସୃଷ୍ଟି ଧ୍ୱଂସ ପାଇବା ଅନିବାର୍ଯ୍ୟ, ମାତ୍ର ଚନ୍ଦ୍ର ଶୀତଳ, କୋମଳ, ନୟନ ପ୍ରୀତିକର ଓ ମନ ମୁଗ୍ଧକର । ଜ୍ୟୋତ୍ସ୍ନାର ସୌନ୍ଦର୍ଯ୍ୟରେ ଜଗତ ମୋହିତ । ଏ ସମସ୍ତ ଗୁଣ କାଳୀଚରଣଙ୍କ ଠାରେ [illegible] ଭାବରେ ବିଦ୍ୟମାନ । ସେ ତାଙ୍କ ଶୀତଳ-କୋମଳ ପ୍ରତିଭାରେ ଏ

ଜାତି, ଏ ଦେଶ ଓ ଏ ପ୍ରାଚୀନ ଐତିହ୍ୟକୁ ଯେପରି ମୁଗ୍ଧ, ପୁଲକିତ କରିଛନ୍ତି, ସେହିପରି ତାଙ୍କର ନିରାଡ଼ମ୍ବର ଗର୍ବହୀନ, ସରଳ ସ୍ୱଭାବରେ ଚନ୍ଦ୍ର ସହିତ ଉପମିତ ହୋଇ ପାରିଛନ୍ତି । ତାଙ୍କ ଆଲୋକ ସୂର୍ଯ୍ୟାଲୋକ ପରି ଏକାନ୍ତ ନିଜସ୍ୱ ହେଲେ ମଧ୍ୟ ସୂର୍ଯ୍ୟର କଠୋରତା କି ପ୍ରଖରତା ତାଙ୍କୁ ସ୍ପର୍ଶ କରିନାହିଁ । ତେଣୁ କବିଚନ୍ଦ୍ର ଉପାଧି ହିଁ ଯଥାର୍ଥରେ ତାଙ୍କ ପ୍ରତି ପ୍ରଯୁକ୍ତ ହୋଇଛି ।

ଚନ୍ଦ୍ର କବିତାର ଉତ୍ସ, କାଳୀଚରଣ ସେହିପରି କବିତାର ଆଧାର । ପୁଣି ତାଙ୍କ ସ୍ୱଭାବ ଚନ୍ଦ୍ରାଲୋକ ପରି ଶୀତଳ, ମନୋରମ-ଶାନ୍ତ ଓ ଉଲ୍ଲାସ-ପ୍ରଦାୟକ । ତାଙ୍କର ଅଗଣିତ ବନ୍ଧୁ, ଅସଂଖ୍ୟ ଶିଷ୍ୟ ଭକ୍ତ, ସବୁଠାରୁ ଅଧିକ ଗୁଣଗ୍ରାହୀ ଭକ୍ତ, ଅନୁଗତ ଏ ଦେଶର ସହର ପୁରପଲ୍ଲୀ ସର୍ବତ୍ର ବିଚ୍ଛୁରିତ ହୋଇ ରହିଅଛନ୍ତି । ଆମ ରାଜ୍ୟରେ ରାଜନୀତି, ଶିକ୍ଷା, ସାହିତ୍ୟ, ସଂସ୍କୃତି, ପାଣ୍ଡିତ୍ୟ କ୍ଷେତ୍ରରେ ଆଜକାଲି ଯୁଗରେ ଏପରି ସ୍ଥାନ ଆଉ କେହି ମାଡ଼ି ବସିଥିବାର ଜଣା ନାହିଁ । ଜନ ମାନସକୁ ନିଜ ପ୍ରତି ଆକୃଷ୍ଟ କରିବାରେ ସେ ଯେ ଅପ୍ରତିଦ୍ୱନ୍ଦୀ, ଏହା କହିଲେ କଦାପି ଅସଙ୍ଗତ ହେବ ନାହିଁ ।

ଓଡ଼ିଆ ସଂସ୍କୃତି ଓ ଓଡ଼ିଶାର ପରମ୍ପରାର ଶ୍ରୀବୃଦ୍ଧି ପାଇଁ କାଳୀଚରଣଙ୍କ ନିଷ୍ଠା, ସାଧନା ଅତୁଳନୀୟ । ଓଡ଼ିଶାର ନିଜସ୍ୱ ଓଡ଼ିଶୀ ସଙ୍ଗୀତ ଓ ଓଡ଼ିଶୀ ନୃତ୍ୟକୁ ଭାରତ କାହିଁକି ବିଶ୍ୱଦରବାରରେ ଯଥାଯୋଗ୍ୟ ଆସନ ଦେବା ଲାଗି ତାଙ୍କର ଯେ ଆଜୀବନ ପ୍ରଚେଷ୍ଟା, ତାହା ଏ ଜାତି କଦାପି ଭୁଲିପାରିବ ନାହିଁ । ତାଙ୍କରି ସାଧନା ଫଳରେ ହିଁ ଓଡ଼ିଶୀ ନୃତ୍ୟ ଆଜି ବିଶ୍ୱରେ ଆଦୃତ, ସମ୍ମାନିତ । ଓଡ଼ିଶୀ ସଙ୍ଗୀତକୁ ସେହିପରି ବିଶ୍ୱ ପ୍ରସାରି କରିବାକୁ ଏବେ ମଧ୍ୟ ତାଙ୍କ ସାଧନା ଅବ୍ୟାହତ ରହିଛି । ଏ ଦିଗରେ ତାଙ୍କର ନିଷ୍ଠା ଏତେ ବଳିଷ୍ଠ ଯେ, ଶାରୀରିକ ଅକ୍ଷମତା, ବାର୍ଦ୍ଧକ୍ୟର ନିଷ୍ଠୁରତା ତା ପାଖରେ ପରାଭବ ସ୍ୱୀକାର କରୁଛି ।

କବିଚନ୍ଦ୍ର କଅଣ ନୁହନ୍ତି ? ସେ ତ ସଙ୍ଗୀତଜ୍ଞ, ନୃତ୍ୟବିତ୍, ଅଭିନେତା, ଅଭିନୟ ନିର୍ଦ୍ଦେଶକ, ମଞ୍ଚଶିଳ୍ପର ନବନବ ସ୍ରଷ୍ଟା; ପୁଣି କବି, ସାହିତ୍ୟିକ, ଗବେଷକ, ସମାଲୋଚକ ଓ ବ୍ୟଙ୍ଗକାର । କଳା-ସଂସ୍କୃତିର ଆଜୀବନ ପୂଜାରୀ । ଏହି ଦକ୍ଷ ସଂଗଠକଙ୍କ କୃତ୍ୟ ଆମ ଦେଶର ସର୍ବତ୍ର— ନଗରୀ,

ସହରର, ଗାଁ ଗଣ୍ଡାର ଶିକ୍ଷିତ, ଯୁବକ ବୃଦ୍ଧ ସମସ୍ତଙ୍କୁ ତାଙ୍କ ପ୍ରତି ଆକୃଷ୍ଟ କରି ପାରିଛି । କେତେ ତାଙ୍କ ପାଖକୁ ଆସି ନିଜର ଭକ୍ତି ଶ୍ରଦ୍ଧା ଅର୍ପଣ କରନ୍ତି, କେତେ କେତେ ସୁଦୂର ବନ୍ୟା-ଦୁର୍ଭିକ୍ଷ ନିଷ୍ପେଷିତ ଘର କୋଣରେ ବସି କବିଚନ୍ଦ୍ରଙ୍କ ଅଜ୍ଞାତରେ ନିଜର ବିନମ୍ର ପୁଷ୍ପାଞ୍ଜଳି ପ୍ରଦାନ କରିଥାନ୍ତି । ତାଙ୍କୁ ଦେଖି, ତାଙ୍କ ସହିତ ମିଶି କଳାପ୍ରେମୀ ଲୋକ ଯେପରି ତାଙ୍କର ଗୁଣ କୀର୍ତ୍ତନ କରନ୍ତି, କୌଣସି ଜୀବନରେ ତାଙ୍କୁ ଦେଖିବାର ସୁଯୋଗ ପାଇ ନଥିବା ଲୋକ ବି ସେହିପରି ତାଙ୍କ କୃତୀ ଯୋଗୁ ତାଙ୍କ ପ୍ରତି ଅନୁରକ୍ତ ହୋଇଥାନ୍ତି । ଆଜିକାଲି ଦେଖାଯାଏ, ଯେଉଁଠାରେ ଦୁଇ ଚାରିଜଣ ସଂସ୍କୃତି ପ୍ରେମୀ, କଳାକାର ଏକଜୁଟ ହୁଅନ୍ତି, ସେଠାରେ ସେମାନେ ପ୍ରଥମେ କବି-ଚନ୍ଦ୍ରଙ୍କ ଜୟନ୍ତୀ ପାଳନ ପାଇଁ ମନ ବଳାନ୍ତି । ଏ ସୌଭାଗ୍ୟ ଏ ଯୁଗରେ କ୍ୱଚିତ ଧନୀ, ମାନୀ, କ୍ଷମତାଶାଳୀ ବା ତୁଙ୍ଗ ରାଜନୈତିକ ନେତାଙ୍କ ଭାଗ୍ୟରେ ଜୁଟିଥାଏ । ଏଇଥିରୁ ସ୍ପଷ୍ଟ ବୁଝାଯାଏ, କବିଚନ୍ଦ୍ର କିଅଣ ଏବଂ ଏ ଜାତି ତାଙ୍କୁ କିପରି ନିଜସ୍ୱ କରି ନେଇଛି ।

କବିଚନ୍ଦ୍ରଙ୍କ ନିଜ ପ୍ରତିଭା ବଳରେ କେବଳ ନିଜ ଜାତି ବା ନିଜ ଦେଶବାସୀଙ୍କ ଦ୍ୱାରା ସମ୍ମାନିତ ନୁହନ୍ତି; ତାଙ୍କ ସମ୍ମାନ ସୁଦୂର ପ୍ରସାରୀ । ବିଶ୍ୱବିଦ୍ୟାଳୟର ଡିଗ୍ରୀ ନଥାଇ ମଧ୍ୟ ବିଶ୍ୱବିଦ୍ୟାଳୟର ସର୍ବଶ୍ରେଷ୍ଠ ଆସନ ଡକ୍ଟର ଉପାଧିରେ ସେ ଭୂଷିତ । ଭାରତୀୟ ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ । କେନ୍ଦ୍ର ସରକାରଙ୍କ ସଙ୍ଗୀତ ନାଟକ ଏକାଡେମୀର ଫେଲୋ (ରତ୍ନ ସଦସ୍ୟ) ମନୋନୀତ ଏବଂ କଳା ସଂସ୍କୃତି ପାଠର ନିୟାମକ ।

ଏହି ବହୁମୁଖୀ ପ୍ରତିଭା, ସାହିତ୍ୟ-ସଂସ୍କୃତି କଳାକ୍ଷେତ୍ରରେ ନିଷ୍ଠା ଓ ଅଖଣ୍ଡ ସାଧନା ଯୋଗୁ କାଳୀଚରଣ ଆଜି କୌଣସି ଗଣ୍ଡି ସୀମା ମଧ୍ୟରେ ଆବଦ୍ଧ ନାହାନ୍ତି । ସେ ଏବେ ବ୍ୟକ୍ତି ବିଶେଷ ନୁହନ୍ତି, ଗୋଟିଏ ଅନୁଷ୍ଠାନ, ବିରାଟ ଅନୁଷ୍ଠାନ । ଦେଶର କଳା ସଂସ୍କୃତି ସହିତ ସେ ନିଜକୁ ଏକୀଭୂତ କରିଦେଇଛନ୍ତି । ସେଇଥି ପାଇଁ ସେ ହୋଇଛନ୍ତି ଦେଶ ଓ ଜାତିର ଅତି ପ୍ରିୟ, ଅତି ଆଦରଣୀୟ ।

ଆଜିକାଲିର ସଭ୍ୟତା କହୁଛି—

"ପର ଲୁଗା ପିନ୍ଧି ଦାଣ୍ଡକୁ ଯାଏ,

ଫଟିଗଲେ ମୁଣ୍ଡ ଝୁଙ୍କାରୁ ଥାଏ" । କିନ୍ତୁ କାଳୀଚରଣ ହେଉଛନ୍ତି ଏ ସଭ୍ୟତାର ସମ୍ପୂର୍ଣ୍ଣ ବିପରୀତ ଧର୍ମୀ । ଏହି ଜାତିର ଐତିହ୍ୟ ଓ ପରଂପରାରେ ସେ ଏତେ ଗର୍ବିତ ଯେ, ପର ଲୁଗା ପିନ୍ଧିବା ତ ଦୂରର କଥା, ସେ ଆଡ଼କୁ ଅନାଇବାକୁ ହିଁ ତାଙ୍କୁ ଘୃଣା ଲାଗେ । ସେ ଆମ ସାହିତ୍ୟ, ଆମ ନାଟ୍ୟକଳା, ଆମ ସଂସ୍କୃତି କ୍ଷେତ୍ରରେ ଯେଉଁ ଗଭୀର ପଦଚିହ୍ନ ରଖି ଦେଲେଣି, ଜାତିର ଇତିହାସରେ ତାହା ଚିରଦିନ ଅଲିଭା ରହିଥିବ, ଆମ ଭାବି ବଂଶଧରଙ୍କୁ ଆଲୋକ ଓ ପ୍ରେରଣା ଦେଉଥିବ ।

ଆଜି ସେହି କବିଚନ୍ଦ୍ରଙ୍କର ଅଣାଅଶୀତିତମ ଶୁଭ ଜନ୍ମତିଥି । ଏହି ଅବସରରେ ତାଙ୍କର ସର୍ବଶ୍ରେଷ୍ଠ ଆରାଧ୍ୟ ଚକାଡ଼ୋଳାଙ୍କ ପାଖରେ ମୋର ଅନ୍ତରର ପ୍ରାର୍ଥନା, ଏ ଜାତି ଆଉ ଅନ୍ତତଃ ଅଷ୍ଟବଂଶ ଥର ଏହି ଉତ୍ସବ ପାଳନ କରିବାର ସୁଯୋଗ ପାଉ ।

—*—

# ମୋ ଜୀବନରେ ଓଡ଼ିଶା ଥିଏଟର୍ସଠାରୁ ଏକାମ୍ର ଥିଏଟର୍ସ ପରିକ୍ରମା

କମଳ ଲୋଚନ ମହାନ୍ତି

ମୁଁ ଗୋଟିଏ ନାଟୁଆ ହେବି ବୋଲି ଗାଁ ନାହାକ ଶୁଣାଇଥିଲା ।

ବାପାଙ୍କର ଗାଁ ଯାତ୍ରା ପାର୍ଟି ପାଇଁ ଆମ ଘରେ କନ୍ଦଳ ଲାଗି ରହିଥାଏ । ହେଲେ ବାପାଙ୍କର ଯାତ୍ରା ପାର୍ଟିକୁ ବଞ୍ଚେଇ ରଖିବା ନିଶା ଓ ପ୍ରୀତି ମୋ ଜୀବନରେ ଅଜାଣତରେ ଯେ ବୀଜବପନ କରିଥିଲା, ତାହା ମୋର ପ୍ରାପ୍ତ ବୟସରେ ପ୍ରାଣେ ପ୍ରାଣେ ଅନୁଭବ କରୁଛି ।

ମାଇନର ପାଶ ପରେ କଟକରେ ମାଟ୍ରିକ ପଢିବା ପାଇଁ ଠିକ୍ ହେଲା । କାରଣ ଆଜିପରି ଗାଁ ଗହଳରେ ଛତୁ ଫୁଟିବା ପରି ଉଚ୍ଚ ଇଂରାଜୀ ସ୍କୁଲ ମୁଣ୍ଡ ଟେକି ନ ଥିଲା ।

ସାନ ମାମୁଁ ଅବକାରୀ ଦାରୋଗା । ଆଶିଂକ ସାହାଯ୍ୟ ମିଳିବ । ତାଙ୍କ ଘରେ ରହିବି । କିନ୍ତୁ ମନଥାଏ ମୋ ଦାଦି ତେଲଙ୍ଗା ବଜାରର ପତିତପାବନ ମେସ୍‌ରେ ଥାନ୍ତି । ତାଙ୍କରି ପାଖରେ ରହନ୍ତି କି । କାରଣ ମାମୁଁଙ୍କ ପାଖରେ ଯାତ୍ରା ଥିଏଟର ଦେଖିବାକୁ ସୁଯୋଗ ମିଳିବ ନାହିଁ । ଆର୍ଥିକ ସ୍ୱଚ୍ଛଳତା ନ ଥିବା ଏକ ବିଡ଼ମ୍ବନା ସିନା ।

କିଛିଦିନ ମାମୁଁଙ୍କ ବସାରେ ରହିଲି । ମା କଟକ ଚଣ୍ଡୀଙ୍କ କୃପାରୁ ମାମୁଁଙ୍କର ବଦଳି ହେଲା । ମୋ ୮ମ ଓ ଦାଦାଙ୍କର ୧୦ମ ଶ୍ରେଣୀ । କଟକ ସହରରେ କାଳୀ ବାବୁଙ୍କ ପ୍ରହସନ ଦଳ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଚହଲ ପକାଇ କଟକ ରାମଚନ୍ଦ୍ର ଭବନରେ ହଇଚଇ ପକାଇ ଦେଉଥାଏ ।

'କିଶୋର ଚନ୍ଦ୍ରାନନ ଚମ୍ପୂ' ।

ଯାତ୍ରା, ସୁଆଙ୍ଗ ଦେଖିଛି । ସେଥିପାଇଁ ପାଗଳ ହୋଇ ଗାଁ ଗାଁ ବୁଲି ରାତି ବିତାଇଛି । ଏ ପୁଣି ରହାସ କ'ଣ ?

ଦାଦି, ପୁତୁରଙ୍କର ଖଞ୍ଜା ଯାଇଥିବା ଦୈନିକ ଚାରିପଇସା ବଜେଟ୍ କାଟି ରାମଚନ୍ଦ୍ର ଭବନରେ କାର୍ଯ୍ୟକ୍ରମ ଘଣ୍ଟାକ ଆଗରୁ ଯାଇ ହାଜର ହେଲୁ । ସେଦିନ ପ୍ରାୟ ଆମେ ଦୁହେଁ ପହିଲି ଦର୍ଶକ । ପ୍ରଥମ ଟିକେଟ ଆମେ କାଟିଥିଲୁ ।

ହାତଟଣା ରିକ୍ସାରେ କାଳୀବାବୁ ଆସି ପହଞ୍ଚିଲେ । ବାବାଙ୍କର ପହିଲି ଦର୍ଶନ ସର୍ବମୟ । କର୍ତ୍ତା ଗୀତ ଲେଖିବା; ସ୍ୱର ଦେବା, ନାଚ ଶିଖାଇବା, ପରିଚାଳନା କରିବା ଏପରି କି ଟିକଟ କାଉଣ୍ଟରର ଦାୟିତ୍ୱ ନେବାପର୍ଯ୍ୟନ୍ତ ସବୁଥିରେ ସଂଯୋଜକ ।

ରହାସ ଆରମ୍ଭ ପୂର୍ବରୁ ସୁଆଙ୍ଗରେ ନଟନଟୀ ଭୂମିକାରେ କହିଲେ ଠିକ୍ ହେବ ନାହିଁ, ସେହିପରି ଅନୁରୂପ ଭୂମିକାରେ କାଳୀ ଚରଣଙ୍କର ବକ୍ତବ୍ୟ ଶୁଣିବା ମୋର ପହିଲି ସୁଯୋଗ । ଆଉରି ମଧ୍ୟ ବିଜୁଳି ଆଲୁଅରେ ଅଭିନୟ ଦେଖିବା ପ୍ରଥମ ।

ଦୁର୍ଲଭଦା ଲଳିତା । ସତେ ଅବା ନାରୀ ସୁଲଭତା ଅଙ୍ଗେ ଅଙ୍ଗେ କିଏ ଭରି ଦେଇଛି ।

ଟିମା (ବର୍ତ୍ତମାନ ରେଡ଼ିଓର ମଙ୍ଗୁଳି) ବିଚକ୍ଷଣ ଚାଇଁ ଟୋକା ଖଣ୍ଡେ । ସତେ ଅବା ବୃନ୍ଦାବନରୁ ପଳେଇ ଆସିଛି । ସଖା କୃଷ୍ଣ ସଙ୍ଗେ ରାମଚନ୍ଦ୍ର ଭବନରେ ଦର୍ଶକଙ୍କ ମନରେ କୃଷ୍ଣ ପ୍ରୀତି ଓ ବୃନ୍ଦାବନର ରୀତି ଦର୍ଶକଙ୍କ ପ୍ରାଣରେ ଜଗାଇ ଦେଇଛି ।

ତାର କିଛିଦିନ ପରେ ମୋହନ ଗୋସାଇଁଙ୍କ ରହାସ ପାର୍ଟି । ମ୍ୟୁନିସିପାଲିଟି ପଡ଼ିଆରେ ମାନଭଞ୍ଜନ, କୃଷ୍ଣଲୀଳା ପରିବେଷଣ କଲେ ।

ରହାସ ଆରମ୍ଭ ପୂର୍ବରୁ ସେ କୀର୍ତ୍ତନ ଏବେବି ମନେ ପଡ଼ିଲେ ରୋମ ଟାଙ୍କୁରି ଉଠେ ।

ବେ ଯୁଗ ଆଗେଇ ଗଲା । ଏହି ରଙ୍ଗଢଙ୍ଗ ଦେଇ ଗାଁ ଗହଳରେ ବହୁ ରାସ ଦଳ ଗଢ଼ି ଉଠିଲା । ହେଲେ ଲୋକଙ୍କୁ ସିନେମା ଆଉ ବଙ୍ଗୀୟ ରଙ୍ଗମଞ୍ଚର ପ୍ରଭାବ ରହାସ ପ୍ରତି ମନଭଙ୍ଗି ଦେଲା ।

ତାରି ପ୍ରତିଫଳନ ସମସ୍ତଙ୍କ ମନରେ ଘଟିଲା । ଗାଁ ଯାତ୍ରା, କାଳିବାବୁ, ମୋହନ ଗୋସେଇଁଙ୍କ ରାସ ଆଉ ସୁଖ ଲାଗିଲା ନାହିଁ । ମନ ଖୋଜି ବୁଲିଲା

ଗୋଟିଏ ନୂଆ ଦିଗ । ରାଧାକୃଷ୍ଣ, ରଙ୍କାରାଣୀ, ପ୍ରହ୍ଲାଦ, ଧ୍ରୁବ, ରାବଣ, କଂସ ଏମାନେ ହୁଏତ ହୋଇ ପାରନ୍ତି ପୁରାଣ ଇତିହାସର ଚରିତ୍ର ।

ମହାଭାରତ, ରାମାୟଣ, ଭାଗବତ ଛାଡ଼ି ସବୁଜ ସାହିତ୍ୟ ଯୁଗରୁ ଗଳ୍ପ, ଉପନ୍ୟାସ ପ୍ରେମ କବିତାରେ ଆତ୍ମ ପ୍ରକାଶ କରି ବିଶେଷ ଭୂମିକାରେ ଯୁବକ ଯୁବତୀ, କିଶୋର କିଶୋରୀଙ୍କ ମନର ନାୟକ ନାୟିକାକୁ ଦେଖିବା ପାଇଁ ସମସ୍ତେ ପାଗଳ । ତେଣୁ ସୁଆଙ୍ଗ ଯାତ୍ରା ମଣିଷ ମନର ସ୍ରୋତ ସଙ୍ଗରେ ମିଶି ଆଗେଇ ଯିବା ଉଚିତ ।

ଏହି ଘଡ଼ି ସନ୍ଧିବେଳେ କବିଚନ୍ଦ୍ର ଯୁଗର ନୂତନ ବାର୍ତ୍ତାବହ ହେଲେ । ଓଡ଼ିଶା ଥିଏଟର୍ସ, ରାମଚନ୍ଦ୍ର ଭବନକୁ ଲାଗିଥିବା ପଡ଼ିଆରେ 'ଗାର୍ଲସ୍କୁଲ' ଆଧୁନିକ ସାମାଜିକ ନାଟକ ପରିବେଷଣ କଲେ ।

ବାବି ଭାଇ (ସାମୁଏଲ ସାହୁ), ପୀରନ୍ନା (ପ୍ରିୟନାଥ ମିଶ୍ର) କିଶୋର ଚନ୍ଦ୍ରାନନ ଚମ୍ପୂର ବିଶିଷ୍ଟ ନାୟିକା ଦୁର୍ଲଭଦା ହିରୋ ଭୂମିକାରେ ଅବତୀର୍ଣ୍ଣ । ଦର୍ଶକଙ୍କ ରୁଚି ବଦଳାଇବା ପାଇଁ କିଶୋର କିଶୋରୀ ମନକୁ ନୂଆ ଖୋରାକି ଯୋଗାଇବା ପାଇଁ ନାରୀକୁ ହିରୋଇନୀ ଭୂମିକାରେ ଦେଖିବାକୁ ମିଳିଲା ।

ମେନା ଦେବୀ, ସୁମତୀ ଦେବୀ, ଲକ୍ଷ୍ମୀ ଦେବୀ, ଆଦି ମଧ୍ୟ ମୋ ଆଖି ଆଗରେ ସେମାନଙ୍କର ଅଭିନବ ଅଭିନୟ ଚେଇଁ ଉଠେ ।

ସାଧୁ ! ସାଧୁ କାଳିଚରଣ । ନାଟ୍ୟଗୁରୁ କାଳିଚରଣ । ସଙ୍ଗୀତ ନିର୍ଦ୍ଦେଶକ କାଳିଚରଣ, ନାଟ୍ୟାଚାର୍ଯ୍ୟ କାଳିଚରଣ ।

'ରସିକ' ଭୂମିକାରେ ସାମୁଏଲଙ୍କର ଅଭିନବ ପାଟବତା ଓଡ଼ିଆ ଯୁବକମାନଙ୍କର ଅଭିନୟ ଦକ୍ଷତାର ପାଚୁର୍ଯ୍ୟତାର ପ୍ରମାଣ ଦେଲା ।

ଧନ୍ୟ ତୁମେ କୁମ୍ଭକାର ! ତମ ଚକ ଚଳିଲା !

ଓଡ଼ିଶା ଥିଏଟର୍ସ ରଙ୍ଗମଞ୍ଚ ଅଭିନେତା ଅଭିନେତ୍ରୀ ଗଢିବାରେ ଏକ ବିଶିଷ୍ଟ ଓ ପ୍ରାୟ ସର୍ବଶେଷ କୁମ୍ଭାର ଶାଳ ହୋଇ ରହିଲା ।

କାଳିବାବୁ ସୁଆଙ୍ଗରୁ ଚମ୍ପୂ-ଚମ୍ପୂରୁ ଗାର୍ଲସ୍କୁଲ ଓଡ଼ିଆ ରଙ୍ଗମଞ୍ଚକୁ ସୁବର୍ଣ୍ଣଯୁଗ ଆଣିଦେଲେ ।

ପାରିପାର୍ଶ୍ୱିକ ଅବସ୍ଥା ଓ ବାସ୍ତବତାକୁ ନେଇ ପେଶାଦାର ରଙ୍ଗମଞ୍ଚର ନୂଆ ଯୁଗ ସୂତ୍ରପାତ ଘଟିଗଲା । ତା ପୂର୍ବରୁ ସମାଲୋଚକମାନେ ଐତିହାସିକ ସତ୍ୟତାକୁ ନେଇ ବାବାଜୀ ନାଟକଠାରୁ ଆରମ୍ଭ କରି କାଞ୍ଚିକାବେରୀ,

କଟକ ବିଜୟ; ସୀତା ବିବାହ, ପୁରୁଷୋତ୍ତମ ଦେବ ପ୍ରଭୃତି ଯେଉଁସବୁ ନାଟକ ତଥା କ୍ରୋନୋଲଜିକାଲ ଇତିହାସ ପାଇଁ ଐତିହାସିକ ସତ୍ୟତା ଉପରେ ସମାଲୋଚକମାନେ ବାଦାନୁବାଦ କରୁଥାନ୍ତୁ ପଛକେ ନିଛକ ଭାବରେ ମୋ ମତରେ ମୋ ଜାଣିବାରେ ବଙ୍ଗୀୟ ନାଟକ ଗତିରୀତି ଓ ଭଙ୍ଗୀ ଭାଙ୍ଗି କବିଚନ୍ଦ୍ର କାଳିଚରଣ ଓଡ଼ିଆ ସାମାଜିକ ନାଟକର ପଥ ପ୍ରଦର୍ଶକ ହୋଇ ଉଠିଲେ ।

ଅବଶ୍ୟ ବଙ୍ଗୀୟ ନାଟକ ପ୍ରଭାବ ନେଇ, ସ୍ୱର୍ଗତ ଅଶ୍ୱିନୀ କୁମାର କାଳୀବାବୁଙ୍କର ସମ ପ୍ରତିଦ୍ୱନ୍ଦୀ ହୋଇ ପଡ଼ିଥାନ୍ତି । ହେଲେ ଅଶ୍ୱିନୀ କୁମାରଙ୍କର ମୌଳିକ ପ୍ରତିଭା ଓ ସାଙ୍ଗଠାନିକ ନିଷ୍କ୍ରିୟତା ଯୋଗୁ କୋଣାର୍କ ଓ. କଳା ପାହାଡ଼ ବ୍ୟତିତ ମୋ ଜୀବନରେ ଅଶ୍ୱିନୀ କୁମାରଙ୍କର ବହୁ ନାଟକ ପ୍ରଭାବ ପକାଇ ପାରିଲା ନାହିଁ ।

ତା' ପରେ ମୋର ମନେପଡ଼େ 'ଭାତ', ଓଡ଼ିଶା ଥିଏଟର୍ସ ବାଙ୍କାବଜାରର ରାଜଘରେ ଆରମ୍ଭ ହେଲା । ରାଜା, ଜମିଦାରଙ୍କ ବିରୁଦ୍ଧରେ ପ୍ରଜାଙ୍କର ବିଦ୍ରୋହ ।

ଓଡ଼ିଶା ରଙ୍ଗମଞ୍ଚରେ ସାମାଜିକ ଜୀବନକୁ ଆଧାର କରି ଏକ ବୈପ୍ଳବିକ କଥାବସ୍ତୁର ଆଧାରିତ ନାଟକ ଦେଖି ଜମିଦାରୀ ପ୍ରଥା ଉଠାଇ ଦେବା ପାଇଁ ଯେଉଁ ରାଜନୈତିକ ସ୍ଲୋଗାନ ଶୁଣା ଯାଉଥିଲା ତାର ସମ୍ପୂର୍ଣ୍ଣ ରୂପ ଜନଜୀବନରେ ଏକ ଗଭୀର ରେଖାପାତ କଲା । ରକ୍ତମାଟି, ଚୁମ୍ବନ, ବେକାର, ପରିବର୍ତ୍ତନ ଆହୁତି, ବନମାଳା. ହରଣଗୁଳରେ ରୋମାଞ୍ଚ ଯେତିକି ସୃଷ୍ଟି ହୋଇଥିଲା, ଜୟଦେବ, ଅତିବଡ଼ୀ ଜଗନ୍ନାଥ ଦାସ, ଅଭିଯାନ ନାଟକରେ କବିଚନ୍ଦ୍ରଙ୍କର ଓଡ଼ିଆ ଜାତି ପ୍ରୀତିର ଚରମ ପରାକାଷ୍ଠା ପ୍ରତିପାଦିତ ହେଲା ।

ଫଟାଭୁଇଁ ନାଟକ ଯେଉଁଦିନ ଦେଖି ଆସିଲି ମନେଅଛି ସେଇଦିନ ରାତିରେ ମୋତେ ନିଦ ଦେଲା ନାହିଁ । କେଡ଼େ ନିର୍ଭୀକ ସେ ଲେଖକ, ବଳିଷ୍ଠ ସେ ଲେଖନୀ । ପରିବେଷଣର ପାଟବତାରେ ଶତ ଶତ ନମସ୍କାର ଜଣାଇଲି କବିଚନ୍ଦ୍ରଙ୍କ ପାଖରେ ।

ପ୍ରାଚୀନ ଚମ୍ପୂର ନାୟକ ନାୟିକାଙ୍କୁ ଆଣି ଆମ ପାରିପାର୍ଶ୍ୱିକ ଚରିତ୍ରକୁ ନାୟକ ନାୟିକା କରି ଖାଣ୍ଟି ଓଡ଼ିଆ ଫଲାପ—ଓଡ଼ିଆ ସଙ୍ଗୀତ—ଓଡ଼ିଶୀ ନାଚ ଦେଇ କବିଚନ୍ଦ୍ର କାଳୀଚରଣ ଆଧୁନିକ ଓଡ଼ିଆ ରଙ୍ଗମଞ୍ଚ ସୃଷ୍ଟି କଲେ । ହେଲେ କୁମ୍ଭାର ଶାଳରୁ ଯେତେ କଳାକାର ଗଢ଼ାହେଲେ ସମସ୍ତେ ଏକ ଏକ ବଳିଷ୍ଠ ନାୟକ ନାୟିକା ହୋଇ ଓଡ଼ିଶା ଥିଏଟର୍ସ ଛାଡ଼ିଲେ । 'ଭାତ' ନାଟକରେ ଜମିଦାରୀ

ବିରୁଦ୍ଧରେ ସ୍ୱର ଉତ୍ତୋଳନ କରଯାଇଥିଲା । କାଳୀ ଚରଣଙ୍କର ହାତଗଢ଼ା ନାୟକ ନାୟିକାମାନେ ମାଲିକାନା ସତ୍ତ୍ୱ ବିରୁଦ୍ଧରେ ବିପ୍ଳବ କରି ଓଡ଼ିଶା ଥିଏଟର୍ସ ଛାଡ଼ିଲେ ।

ଖଇ ଫୁଟିଲା ପରି ତାଙ୍କର ହାତଗଢ଼ା ନାୟକ ନାୟିକାମାନେ ବିଭିନ୍ନ ଅନୁଷ୍ଠାନ ଗଢ଼ିଲେ । ହେଲେ ତିନୋଟି ରଙ୍ଗମଞ୍ଚ, ଓଡ଼ିଆ ରଙ୍ଗମଞ୍ଚ ଓଡ଼ିଆ ନାଟକ ସାହିତ୍ୟକୁ ସମୃଦ୍ଧି କଲା । ସେଗୁଡ଼ିକ ହେଲା 'ଜନତା ଥିଏଟର୍ସ' 'ଅନ୍ନପୂର୍ଣ୍ଣା ବି ଗ୍ରୁପ୍', ପ୍ରତିଦ୍ୱନ୍ଦି 'ଅନ୍ନପୂର୍ଣ୍ଣା ଏ ଗ୍ରୁପ୍' । ଓଡ଼ିଶା ଥିଏଟର୍ସର କେତେକ କଳାକାରଙ୍କୁ ନେଇ ସୁପ୍ରସିଦ୍ଧ ହୋଇ ଉଠିଲା । ଓଡ଼ିଶା ଥିଏଟର୍ସ ଭାଙ୍ଗି ଯିବା ପରେ କବିଚନ୍ଦ୍ରଙ୍କର ନାଟକ 'ରକ୍ତମନ୍ଦାର', 'ସାରଳା ଦାସ'ରେ କବିଚନ୍ଦ୍ରଙ୍କର କୃତିତ୍ୱ ବଜାଏ ହୋଇ ରହିପାରିଲା ନାହିଁ । ତେଣୁ ପେଶାଦାର ରଙ୍ଗମଞ୍ଚ ପାଇଁ ଭଞ୍ଜ କିଶୋର, ଗୋପାଳ ଛୋଟରାୟ, ରାମଚନ୍ଦ୍ର ମିଶ୍ର ପ୍ରଭୃତି ନାଟକ ଲେଖିଲେ । କିନ୍ତୁ ଗୀତ, ସଙ୍ଗୀତ ସ୍ୱର ଓ ନୃତ୍ୟ ପରିକଳ୍ପନା ପାଇଁ କବିଚନ୍ଦ୍ର କିଛି କାଳ ପାଇଁ ଅପ୍ରତିଦ୍ୱନ୍ଦୀ ହୋଇ ରହିଲେ ।

କବିଚନ୍ଦ୍ରଙ୍କର ସଙ୍ଗୀତ ରଚନା, ଶବ୍ଦ ବିନ୍ୟାସ ଓ ସ୍ୱରଲିପି ଓଡ଼ିଆ ଛନ୍ଦର ଆବେଗ ଭରା ନିର୍ଯ୍ୟାସ ଅନ୍ୟ ଲେଖକଙ୍କୁ ମିଳିବ କାହୁଁ ।

ଅବଶ୍ୟ ପରେ ପରେ କିଶୋରକବି ଶ୍ୟାମ ସୁନ୍ଦର ରଙ୍ଗମଞ୍ଚରେ ପେଶାଦାର ନାଟକରେ ସଙ୍ଗୀତ ରଚନା ଓ ସ୍ୱର ଦେବା ପାଇଁ କବିଚନ୍ଦ୍ରଙ୍କର ଅନୁପୂରକ ହୋଇ ଉଠିଲେ । କବିଚନ୍ଦ୍ରଙ୍କର ଦାୟାଦ ହିସାବରେ ନବୀନ ନାଟ୍ୟକାରମାନଙ୍କର ସାମାଜିକ ନାଟକ ଓଡ଼ିଆ ରଙ୍ଗମଞ୍ଚର ଅଭିବୃଦ୍ଧିକୁ ଅନେକାଂଶରେ ଆଗେଇ ନେଲା ।

ଏକଦା ସାରା ଭାରତରେ କାହିଁକି ଓଡ଼ିଶାରେ କେବଳ ପ୍ରତ୍ୟହ ସନ୍ଧ୍ୟାରେ ତିନୋଟି ଥିଏଟର୍ସ ନାଟକ ପରିବେଷଣ କରୁଥିଲା । କିନ୍ତୁ ହାୟ କୋଣାର୍କ, ଜଗନ୍ନାଥ, ଲିଙ୍ଗରାଜ ମନ୍ଦିର ପାଇଁ ଆମେ ଓଡ଼ିଆ ପୁଏ ଯେପରି ଗର୍ବିତ ମନେକରୁ ଏଇ କେତେ ବର୍ଷର ଥିଏଟର୍ସ ସଫଳତା ପାଇଁ ସେହିପରି ଗର୍ବକରୁ ନାହିଁ ।

ହାୟ ! କବିଚନ୍ଦ୍ର ଯେଉଁ ନୂତନ ରଙ୍ଗମଞ୍ଚ ସୃଷ୍ଟି କଲେ ସେ ବଞ୍ଚି ଥାଉ ଥାଉ ଓଡ଼ିଆ ରଙ୍ଗମଞ୍ଚରୁ ମଞ୍ଚପ୍ରଦୀପ ଲିଭି ଲିଭି ଯାଉଛି ।

ଏବେ ମୋ କଥା କହିବା ଆବଶ୍ୟକ ପଡ଼ୁଛି ।

ଉପନ୍ୟାସ ଲେଖାରୁ ସ୍ୱର୍ଗୀୟ ବଳରାମ ବାବୁଙ୍କ ନିର୍ଦ୍ଦେଶରେ ମୁଁ ନାଟକ ଲେଖା ଆରମ୍ଭ କଲି । ବିଖ୍ୟାତ ଔପନ୍ୟାସିକ କାହ୍ନୁବାବୁଙ୍କ 'ଝଞ୍ଜା'କୁ ନାଟକ ରୂପ ଦେଲି । ହେଲେ ଗୋପାଳ ଛୋଟରାୟଙ୍କ ନାଟକ 'ଝଞ୍ଜା' ଜନତା ଥିଏଟର ପରିବେଷଣ କଲା । 'ଅଭ୍ୟୁଦୟ', 'ସମାଧାନ' କୌଣସି ପେଶାଦାର ନାଟ୍ୟ ସଂସ୍ଥା ଗ୍ରହଣ କଲେ ନାହିଁ । ଅନ୍ନପୂର୍ଣ୍ଣା 'ବି'ଗ୍ରୁପର ଦୁର୍ଦ୍ଦିନରେ ମୋ ନାଟକ 'ଗାଁ ମାଟି' ଶିକ୍ଷା ବିଭାଗ ଦ୍ୱାରା ଶ୍ରେଷ୍ଠ ବିବେଚିତ ହେଲା ପରେ, ମୋ ନାଟକ ପରିବେଷଣ ପାଇଁ ଅନ୍ନପୂର୍ଣ୍ଣା ବି-ଗ୍ରୁପର କର୍ମକର୍ତ୍ତାମାନେ ଆଗ୍ରହ କଲେ ।

କାଳୀ ବାବୁଙ୍କ ହାତଗଢ଼ା ନାୟକ ନାୟିକାମାନେ ମୋ ନାଟକ ପରିବେଷଣର ସର୍ବମୟ ହିରୋ, ହିରୋଇନ୍ ହେଲେ ।

କିରଣୀ, ସ୍ୱାମୀ ସ୍ତ୍ରୀ, ଡାକବଙ୍ଗଳା, ମାତୃମଙ୍ଗଳ କେନ୍ଦ୍ର, ପିପାସା, ସୁବର୍ଣ୍ଣପୁର, ଭାଇ ଭଉଣୀ, ମଣିଷ, ଆଜାଦୀ, ମଣିକାଞ୍ଚନ ପ୍ରଭୃତି ୨୨ ଖଣ୍ଡ ନାଟକ ପେଶାଦାର ରଙ୍ଗମଞ୍ଚରେ ସଫଳତା ସହକାରେ ଅଭିନୟ ହେଲା ପରେ ଭାବିଲି ଗାଁ ଅବଧାନ ଯାହା କହିଥିଲେ ସତ ହେଲା । ମୁଁ ପୂରାପୂରି ନାଟୁଆ ହୋଇଗଲି ।

ଅଖିଳ ପଟ୍ଟନାୟକ ଅବନୀ ବରାଳଙ୍କ ପ୍ରେମରେ ପଡ଼ି ପିଲାଛୁଆଙ୍କ କଥା ଭୁଲି ଜନତା ଥିଏଟର୍ସକୁ ଗଢ଼ିବୁ ବୋଲି ପଣ କଲି । କିନ୍ତୁ ହେଲା ନାହିଁ । କବିଚନ୍ଦ୍ରଙ୍କ ସହିତ ଓଡ଼ିଶା ଥିଏଟର୍ସ କଳାକାରଙ୍କର ଯେଉଁ ସମସ୍ୟା ସେହି ସମସ୍ୟା ସବୁ ଉପୁଜିଲା । ସେଗୁଡ଼ିକର ସମାଧାନ ସୂତ୍ର ମିଳିଲା ନାହିଁ ।

ସାରା ଭାରତରେ ଗଣତନ୍ତ୍ରକୁ ବଞ୍ଚାଇ ଠିକ୍ ବାଟରେ ଚଳାଇବା ପାଇଁ କର୍ତ୍ତବ୍ୟ ପ୍ରଥମ କି ଦାବୀ ଅଗ୍ରଗଣ୍ୟ ତା'ର ନିଷ୍ପତ୍ତି ଭୋଟ ଓ କ୍ଷମତା ପାଗଳ ପେଶାଦାର ରାଜନୈତିକମାନେ ଯେପରି ଅମିମାଂସିତ ଭାବରେ ଜନତା ହାତରେ ଛାଡ଼ି ଦେଇ ଜାତୀୟ ଚରିତ୍ର ଓ ମାନବିକତାକୁ ଲୋପ କରି ଦେଲେଣି, ସେହିପରି ଭାବରେ କଳାକାରମାନେ କାମ ନ କରି ଦାବୀ ଉପରେ ଜନତା ଥିଏଟର୍ସକୁ, ଭାଙ୍ଗି ଦେଲେ । ତାହାହିଁ ମଧ୍ୟ ଅନ୍ନପୂର୍ଣ୍ଣା 'ବି ଗ୍ରୁପ'ର ଭାଗ୍ୟରେ ଘଟିଲା ଆଜି ସୌଖିନ, ଟେଲିଭିଜନ, ରେଡ଼ିଓ କଳାକାରମାନେ ହିନ୍ଦି ବହି ତର୍ଜମା କରି ବା ଅନ୍ୟ ଭାଷାରୁ ବହୁ ଭାବରେ ରୂପାନ୍ତରିତ କରି କାଁ ଭାଁ ନାଟକ ପରିବେଷଣ କରିବାରେ ବ୍ୟସ୍ତ ।

ଅଫିସ କାମ ସାରି ଜନତା ଥିଏଟର୍ସକୁ ଅଖିଳ ପଟ୍ଟନାୟକଙ୍କ ସାଙ୍ଗରେ ଘୋଡ଼ା ଦଉଡ଼ ନିଶା ଭାଙ୍ଗିବା ପରେ ବାବା (କାଳୀବାବୁ ଇତିମଧ୍ୟରେ ଧର୍ମ, କର୍ମଗୁରୁ ଓ ବାପାର ଆସନ ମୋ ହୃଦୟରେ ଗ୍ରହଣ କରି ସାରିଥିଲେ) ପରାମର୍ଶ ଦେଲେ । "ବାବୁ ! ସରକାରୀ କର୍ମଚାରୀଙ୍କ ଭିତରେ ବହୁତ ପ୍ରତିଭାବାନ କଳାକାର

ଅଛନ୍ତି । ଅଭାବଗ୍ରସ୍ତ ଭଦ୍ର ଝିଅଙ୍କୁ ନେଇ ଅନ୍ତତଃ ଭୁବନେଶ୍ୱରରେ ଗୋଟିଏ ଅନୁଷ୍ଠାନ ଗଢ଼ । କୁମ୍ଭାରଚକ ନ ଘୂରିଲେ କଳାକାର କାହୁଁ ପାଇବା । ନାଟକ ଓ ରଙ୍ଗମଞ୍ଚ କଣ ଆମେଚରଙ୍କୁ ନେଇ କେଉଁ ଦେଶରେ ସମ୍ଭବ ହୋଇଛି ?

ଢାଟକରେ ଅଛି ନାଟୁଆ ହେବି । ପୂରାପୂରି ନାଟକ ନିଶା ଘୋଟିଗଲା । ବାବା (କାଳୀବାବୁଙ୍କ) ପରାମର୍ଶ ମନକୁ ଛୁଇଁଲା । ସାହସ ଓ ଅର୍ଥ ଉଭୟ ଲୋଡ଼ା । କେତେକ ବନ୍ଧୁଙ୍କୁ ନେଇ ୧୯୬୭ ମସିହାରେ ଏକାମ୍ର ଥିଏଟର୍ସ ଏକ ଅନୁଷ୍ଠାନ ଗଢିଲି । କାଳୀବାବୁଙ୍କ ନାଟକ 'ଭାତ' ଭୁବନେଶ୍ୱରରେ ମୋର ତିଆରି ହେଉଥିବା ଘରେ ରିହରସାଲ ଆରମ୍ଭ କଲୁ, ବହୁ ନାରୀ ଚରିତ୍ର ଦରକାର । ପେଶାଦାର ଝିଅ ନେବୁ ନାହିଁ । ପାଠ ପଢ଼ୁଆ ଭଦ୍ରଘର ଝିଅ ଏତେ କେଉଁଠୁ ମିଳିବେ । ନିତିମାସ ବହୁଚେଷ୍ଟା ପରେ 'ଭାତ' ନାଟକ ନିଶା ଛାଡ଼ିଲି ।

ତରୁଲତା, ଭୁବନେଶ୍ୱର ମ୍ୟୁନିସିପାଲିଟି ଗାର୍ଲସ୍କୁଲର ଜଣେ ଶିକ୍ଷୟିତ୍ରୀ ଓ ଗାୟିକା ମଧ୍ୟ । ସେ ରାଜି ହେଲେ । ମିସ୍ ମଲିକ ନାଟକ ଦୁଇଟି ନାୟିକାଙ୍କୁ ନେଇ । ସରକାରୀ ଅଫିସରେ କାମ କରୁଥିବା ଶ୍ରୀ ନିର୍ମଳ ପଟ୍ଟନାୟକ, ସ୍ୱର୍ଗତ ରହାସ ବିହାରୀ ମହାନ୍ତି, ଶ୍ରୀଯୁକ୍ତ ଲକ୍ଷ୍ମୀଧର ମହାନ୍ତି, ପୂର୍ଣ୍ଣଚନ୍ଦ୍ର ମହାପାତ୍ର, ରବିନାରାୟଣ ଭୁତିଆ, ଅସୀମ ଘୋଷ, ଆରୁଣୀ କୁମାର ରକ୍ଷିତ, ରବି ଦାସ, ବିପିନ ମହାନ୍ତି ଓ ବିଶ୍ୱନାଥ ସୁବୁଦ୍ଧିଙ୍କୁ ନେଇ ସଫଳତାର ସହିତ ବହୁ ରଜନୀ କସ୍ତୁରବା ନାରୀ ମହଲରେ ପରିବେଷଣ କରିଗଲା । ଅନୁଷ୍ଠାନ ଗଢିବାରେ ପ୍ରଧାନ ନାୟକ ହେଲେ ଶ୍ରୀ ନଗେନ୍ଦ୍ର ମୋହନ ମହାନ୍ତି ।

ତାଙ୍କରି ଉଦ୍ୟମ, ଅବିଶ୍ରାନ୍ତ ଚେଷ୍ଟା ଫଳରେ ୮।୧୦ଟି ଝିଅଙ୍କୁ ପଢିବା, ସିଲେଇ ଶିଖାଇବା ଇତ୍ୟାଦି କାମରେ ନିୟୋଜିତ କରି ଗୀତ, ନାଚ, ଡ୍ରାମା ଶିଖାଇବା କାର୍ଯ୍ୟକ୍ରମ ଭିତରେ ସଂଗ୍ରାମ, ଗମରହିମ, କଳାକାର, ଭାରତ ଆବିଷ୍କାର, ସୁମିତ୍ରାର ସଂସାର ଓ ରୂପାନ୍ତର ପ୍ରଭୃତି ଦଶଖଣ୍ଡି ଡ୍ରାମା କେବଳ ଭୁବନେଶ୍ୱରରେ ନହେଁ ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ପରିବେଷଣ କଲାପରେ ଜନତା ଅନ୍ନପୂର୍ଣ୍ଣା ବ୍ୟାଧି ଏ ଅନୁଷ୍ଠାନକୁ ମଧ୍ୟ ଘୋଟିଲା । ଦାୟିତ୍ୱ ନେବାକୁ ହିରୋମାନେ ଆଗେଇ ନ ଆସି ହିରୋଇନ୍‌ମାନଙ୍କୁ ନିଜସ୍ୱ କରିବାରେ ବହୁ ଅବାନ୍ତର ଘଟଣା ଘଟିଲା ।

ଏ ସମସ୍ୟାର ସମାଧାନ କାହିଁ । କଳା ଅନୁଷ୍ଠାନକୁ ଧର୍ମ ଅନୁଷ୍ଠାନର ପବିତ୍ରତା ରକ୍ଷା ନ କଲେ ରଙ୍ଗମଞ୍ଚ ତିଷ୍ଠି ପାରିବ ନାହିଁ ।

•

ଅନୁଭବ କରୁଛି ହେଲେ ଅନୁଭୂତି ଓ ବାସ୍ତବତାକୁ ଖାପ ଖୁଆଇ କଣ କରିବାକୁ ହେବ ରାହା ପାଉନାହିଁ ।

ତେଣୁ ବାବା (କାଳୀବାବୁ) ଗଢ଼ାସବୁ ସାମାଜିକ ନାଟକକୁ ଓଡ଼ିଆ ରଙ୍ଗମଞ୍ଚକୁ ଆଗେଇ ନେଇବେଳେ ମୁଁ ସାମାଜିକ ନାଟକରୁ ଗଢ଼ାସବୁ ଏକାମ୍ର ଥିଏଟର୍ସକୁ ଫେରାଇ ନେଇଛି ।

ମାନଭଞ୍ଜନ, ବାଲ୍ୟଲୀଳା, ଗୋପଲୀଳାକୁ ନୂଆ ରଙ୍ଗ ନୂଆ ପୁଟ ଦେଇ ଓଡ଼ିଶୀ ନୃତ୍ୟ ପୁରାତନ ସଙ୍ଗୀତକୁ ଆଧାର କରି ଏକ୍ସପେରିମେଣ୍ଟ କରିବାକୁ ଚେଷ୍ଟା ଚାଲିଛି ।

ହେଲେ ରଙ୍ଗମଞ୍ଚ କ'ଣ ସଙ୍ଗୀତନାଟକଏକାଡେମୀର ସରକାରୀ ଜ୍ଞାନ ଓ ଧ୍ୟାନ କ୍ଷମତା ପାଗଳ ରାଜନୀତି ପୁରୋହିତ ଓ ସବ୍ଜାନ୍ତା ବ୍ୟୁରୋକ୍ରେଟଙ୍କ କୃପାରେ ବଞ୍ଚି ପାରିବ ???

ଦାୟିତ୍ୱରେ ରହି ନିଜ ଭୁଲ ଆଦେଶ ପାଇଁ ଅନ୍ୟକୁ ଦାୟୀ କରିବା ବ୍ୟବସ୍ଥା ଯେତେଦିନ ଏ ଦେଶରେ ଚାଲିଥିବ, ମାନବିକତା, ଶିକ୍ଷା, ସଂସ୍କୃତି କିଛି ଉଧେଇ ପାରିବ ନାହିଁ ।

କାମ କରିବା ଲୋକଠାରୁ ଆଦେଶ ଦେବା ଲୋକ ଯେଉଁଠି ସମ୍ମାନିତ, ସେ ଜାତିର ଚରିତ୍ର ଗଢ଼ିଉଠିବ କେମିତି ?


People who drink
Squashes drink
ORANGE
SQUASH
Orange
Squash
Available at all leading shops
Means Quality

Live stock farming is a permanent remedy against Draught

ପଶୁପାଳନ କର

ମରୁଡ଼ିଜନିତ ବିପଦର
ସ୍ଥାୟୀ ପ୍ରତିକାର କରନ୍ତୁ ।

ସମ୍ବାଦ ପରିବେଷଣ ସଂସ୍ଥା

# ପଶୁପାଳନ ବିଭାଗ,

ଓଡ଼ିଶା କଟକ

## ରବି ଋତୁପାଇଁ କେତୋଟି
## ଅଧିକ ଅମଳକ୍ଷମ ଧାନ

| ଧାନର କିସମ | କେଉଁ ଜମିରେ ଚାଷ ହେବ | କେତେ ଦିନରେ ଆଦାୟ ହୁଏ |
|---|---|---|
| ୧ । ସୁଫଳା | ଜଳସେଚିତ ଡିପ ଜମି | ୧୦୦ |
| ୨ । ଡି. ଆର. ୯୨ | ,, | ୧୦୦ |
| ୩ । ପାରିଜାତ | ,, | ୧୦୫ |
| ୪ । ଅନ୍ନପୂର୍ଣ୍ଣା | ,, | ୧୧୦ |
| ୫ । କାବେରୀ | | ୧୧୫ |
| ୬ । ପୁଷା-୨-୧ | ,, | ୧୧୫ |
| ୭ । କଳିଙ୍ଗ-୨ | ଜଳସେଚିତ ଡିପ ମଝିଆଳି ଜମି | ୧୨୫ |
| ୮ । ରତ୍ନା | ,, | ୧୨୫ |
| ୯ । ପଦ୍ମା | ,, | ୧୨୫ |
| ୧୦ । କୁମାର | ,, | ୧୨୫ |
| ୧୧ । ହେମ | ଜଳସେଚିତ ମଝିଆଳି ଜମି | ୧୪୦ |
| ୧୨ । ଏମ୍.ଆର.-୧୫୫୦ | ,, | ୧୪୦ |
| ୧୩ । ଜୟା | ,, | ୧୪୦ |
| ୧୪ । ଗଜେଶ୍ୱରୀ | ,, | ୧୪୫ |
| ୧୫ । ଆଇ.ଆର.-୮ | | ୧୪୫ |
| ୧୬ । ଶକ୍ତି | ,, | ୧୪୫ |

କୃଷି ନିର୍ଦ୍ଦେଶାଳୟ, ଓଡ଼ିଶା, ଭୁବନେଶ୍ୱର

## ORISSA STATE FINANCIAL CORPORATION, CUTTACK-9

is committed to the development of backward regions of the State. The following are the concession available to the entrepreneurs to set up industries in the Districts of Dhenkanal, Koraput, Keonjhar, Kalahandi, Mayurbhanj, Bolangir, Phulbani and Balasore declared backward by the Govenment of India.

* Rate of Interest — $8\frac{1}{2}$ % P. A. after rebete of 2% P. A. for timely repayment and after refinance by Industrial Development Bank of India.

* Central Subsidy — To the extent of 15% of the cost of fixed assets.

( not applicable to Phulbani & Balasore districts. )

* Margin of Security : — 10 to 15% in case of technician entrepreneurs, and 25 to 30% in case of others.

* Longer moratorium period.
* Longer repayment period.

Soft loan carrying Interest at 1% P. A. to cover the shortfall in promotor's contribution in deserving cases.

DEAR DOCTOR;

WE PRAY YOUR PEN HABITS.

*Sincerly yours*

BEVIZYME

VICOFERON

DYSPEPSOL

ANTHELCID

C/O

M/S. EASTERN INDIA PHARMACEUTICAL LABORATORY

B-22, INDUSTRIAL ESTATE
BHUBANESWAR-10